# ରାମ ଓ ଶ୍ୟାମ

## ଆଦିବାସୀଙ୍କ ସହ ଅଭିଜ୍ଞତା

PARLE




























ପାର୍ଲେ
**ପପିନସ**
ରସାଳ · ମଧୁର · ମଜାଦାର



ପୂର୍ବରୁ ରନ୍ଧାଯାଇଥିବା

# ଫ୍ୟାରେକ୍ସ®-ଭେଜ୍

## ୬ ମାସରୁ ଏହା ଦେବାକୁ ଆରମ୍ଭ କରନ୍ତୁ ।




ନୂଆ ଫ୍ୟାରେକ୍ସ-ଭେଜ ଶାକସବଜିର ପ୍ରାକୃତିକ ଗୁଣରେ ପରିପୂର୍ଣ୍ଣ । ଭିଟାମିନ-ସମୃଦ୍ଧ ଶାକସବଜି ଯଥା-ଗାଜର, ବିଲାତିବାଇଗଣ, ଆଉମଧ୍ୟ ମୁଗଡାଲି । ଏହା ପୂର୍ବରୁ ରନ୍ଧାଯାଇଛି ତେଣୁ ଛୋଟ ଛୋଟ ଶିଶୁମାନେ ମଧ୍ୟ ଏହାକୁ ସହଜରେ ହଜମ କରିପାରିବେ ।

**ଫ୍ୟାରେକ୍ସ-ବଢ଼ି ଉଠିବାର ଏକ ସ୍ୱାଦଭରା ଉପାୟ ।**

Arya Ranjan Beh



# ଚନ୍ଦ୍ରମାମୁଁ

ଅକ୍ଟୋବର ୧୯୮୮



## ବିଷୟ-ସୂଚୀ


ସମ୍ପାଦକୀୟ ... ୭
ଚନ୍ଦ୍ରମାମୁଁ ସମ୍ବାଦ-ବିଚିତ୍ରା ... ୯
ଅଭିନବ ପରୀକ୍ଷା ... ୧୦
ତଥାସ୍ତୁ ଦେବତା ... ୧୧
ନିର୍ଦ୍ଦୟ ହୃଦୟ ... ୧୭
କନକ ଉପତ୍ୟକାର କାହାଣୀ ... ୧୯
ଅଦ୍ଭୁତ ଅସ୍ତ୍ର ... ୨୨
କ'ଣ ଲେଢ଼ା ... ୩୨
ମୁଦ୍ରା ରାକ୍ଷସ ... ୩୪
ଭଲ ବିଦ୍ୟା ... ୩୯
କୂର୍ମାବତାର ... ୪୩
ଅଦ୍ଭୁତ ବଂଶୀ ... ୫୧
ଯାଦୁକାରୀ ଘଣ୍ଟି ... ୫୮
ପ୍ରକୃତିର ବିସ୍ମୟ! ... ୬୩
ଫଟୋ-ପରିଚୟ-ପ୍ରତିଯୋଗିତା ... ୬୫





ପ୍ରତି ସଂଖ୍ୟା : ୨-୫୦
ବାର୍ଷିକ ମୂଲ୍ୟ : ୩୦-୦୦

Dhanam

ସୌରଭ ମନମୁଗ୍ଧକାରୀ
ସଦ୍ୟତା ତନୁ ଆବୋରି

ନୂଆ
# ପ୍ରେମ୍
ସ୍ୱାଭାବିକ ରୂପେ ଆପଣଙ୍କର




ଏବେ ଏକ ସୁବିଧାଜନକ ଆକାର ଆଉ ନୂଆ ସୌରଭରେ ମିଳୁଛି




# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍‌ଡୀ

---

"କନକ ଉପତ୍ୟକାର କାହାଣୀ"ର ନାୟକ ରାଜୁ ବର୍ତ୍ତମାନ ଯାଇ ଗୋଟିଏ ଅପୂର୍ବ ରାଜ୍ୟରେ ପହଞ୍ଚିଛି । ସେଠାକାର ବାସିନ୍ଦାମାନେ ମଣିଷ ନୁହନ୍ତି; ମଣିଷଙ୍କ ଅପେକ୍ଷା ସେମାନେ ବହୁତ ଅଧିକ ସୁଖୀ ଓ ସୁନ୍ଦର । କିନ୍ତୁ ସେମାନେ ଶୀତ ଖାଇ ପାରନ୍ତି ନାହିଁ । ଅର୍ଥାତ୍ କେବଳ ମଣିଷ ଭିତରେହିଁ ସବୁ ପ୍ରକାର ବିକାଶର ସମ୍ଭାବନା ନିହିତ ।

### ଅମରବାଣୀ

ଅପରାଧୋ ନ ମେଽସ୍ତୀତି, ନୈତଦ୍ ବିଶ୍ୱାସ କାରଣମ୍ ।
ବିଦ୍ୟତେ ହ୍ୟି ନୃଶଂସେଭ୍ୟୋ, ଭୟଂ ଗୁଣବତାମପି ॥

[ମୁଁ କାହାର ଅପକାର କରିନାହିଁ, ଅତଏବ ମୋର କେହି କିଛି ଅପକାର କରିବ ନାହିଁ, ଏଭଳି ଭାବିବା ଅନୁଚିତ । ଦୁଷ୍ଟ ପ୍ରତି ସତର୍କ ରହିବା ଏକାନ୍ତ ଆବଶ୍ୟକ ।]

---

ବର୍ଷ : ୨୨ ଅକ୍ଟୋବର ୧୯୮୮ ଅଙ୍କ : ୪

ପ୍ରତି ସଂଖ୍ୟା : ଟ. ୨.୫୦ :: ବାର୍ଷିକ ମୂଲ୍ୟ : ଟ. ୩୦.୦୦

# ଏବେ ହର୍ଲିକ୍ସ
# ଅତିରିକ୍ତ କ୍ୟାଲସିୟମ ସହ






**"ବଢ଼ିଲା ପିଲାମାନେ ଅଧିକ କ୍ୟାଲସିୟମ ଆବଶ୍ୟକ କରନ୍ତି ।"**

ବର୍ତ୍ତମାନ ହରଲିକସ୍ ଅତିରିକ୍ତ କ୍ୟାଲସିୟମରେ ସମୃଦ୍ଧ—ଯାହା ବଢ଼ିଲା ପିଲାମାନଙ୍କର ଶକ୍ତ ଦାନ୍ତ ଓ ସୁସ୍ଥ ହାଡ଼ ଗଠନ ପାଇଁ ଅତି ଗୁରୁତ୍ୱପୂର୍ଣ୍ଣ ଏବଂ ସମଗ୍ର ପରିବାରର ଉତ୍ତମ ସ୍ୱାସ୍ଥ୍ୟ ପାଇଁ ଏକାନ୍ତ ଜରୁରୀ ।

ହରଲିକ୍‌ସ, ଶକ୍ତି ଓ ସାମର୍ଥ୍ୟ ଯୋଗାଉଥିବା ପ୍ରୋଟିନ୍, ଭିଟାମିନ୍‌ସ, ମିନେରାଲସ୍ ଓ କାର୍ବୋହାଇଡ୍ରେଟସ୍ ଭଳି ପ୍ରାକୃତିକ ପରିପୁଷ୍ଟି ଉପାଦାନରେ ଭରପୁର । ତେଣୁ ବର୍ତ୍ତମାନ ଅତିରିକ୍ତ କ୍ୟାଲସିୟମ ଅର୍ଥ, ଅଧିକ ଉତ୍ତମ ସ୍ୱାସ୍ଥ୍ୟ ।

**ପୁଷ୍ଟି ଯୋଗାଇବାରେ ଅତୁଳନୀୟ**




HTA-6037 ORI

## ଚନ୍ଦମାମୁଁ ସମ୍ବାଦ-ପତ୍ରିକା



### ମହେଞ୍ଜୋଦାରୋର ଇତି କଥା

ଆମେ ସମସ୍ତେ ପ୍ରାଚୀନ ନଗରୀ ମହେଞ୍ଜୋଦାରୋ କଥା ଜାଣୁଁ । କିନ୍ତୁ ତାହା କିପରି ଧ୍ୱଂସପ୍ରାପ୍ତ ହେଲା, ସେକଥା ଜାଣୁନା । ଜଣେ ରୁଷ ବୈଜ୍ଞାନିକ ଏମ୍. ଡମିଟ୍ରିଏଭ୍ ନିକଟରେ କହିଛନ୍ତି କି ଏକ ପ୍ରକାର ରାସାୟନିକ ବିସ୍ଫୋରଣ ଯୋଗୁଁ ଏ ନଗରୀ ଧ୍ୱଂସ ପାଇଗଲା । ସେ ବିସ୍ଫୋରଣ ପ୍ରାକୃତିକ । ବାତାବରଣରେ କେତେକ ବିଶେଷ ଧରଣର ଅଣୁଗୁଡ଼ି ଭିତରେ ସଂଘର୍ଷ ଯୋଗୁଁ ତାହା ହୋଇଥିଲା ।

### ନୂଆ ପ୍ରବାଳ ଦ୍ୱୀପ



ଚାରିଗୋଟି ଟେନିସ୍ କୋର୍ଟ ଆକାରର ଗୋଟିଏ ପ୍ରବାଳ ଦ୍ୱୀପ ପୂର୍ବ ମାଲେସିଆର ସାବା ରାଜ୍ୟଠୁଁ ଅଦୂରରେ ସମୁଦ୍ର ଭିତରେ ନୂଆ କରି ଦେଖା ଦେଇଛି ।



### ସଚ୍ଚା ସେବକ

ଶ୍ରୀଲଙ୍କାର ଜଣେ କୃଷକ ତା'ର ଦୁଇଟି ପୋଷା କୁକୁର ସହ ବଣ ଭିତରକୁ ଯାଇ ଗୋଟିଏ ଦୁର୍ଘଟଣାରେ ମୃତ୍ୟୁ ମୁଖରେ ପତିତ ହେଲା । ଗୋଟିଏ କୁକୁର ତାକୁ ଜଗି ରହିଲା । ଅନ୍ୟଟି ତା' ଗାଁକୁ ଆସି ଅନବରତ ଭୁକି ଭୁକି ଲୋକମାନଙ୍କୁ ଆକୃଷ୍ଟ କରି ବଣ ଭିତରକୁ ଖାଉନ୍ଦର ମୃତ ଦେହ ପାଖକୁ ନେଇଗଲା ।

### ରାଣୀଙ୍କ ଅଳଙ୍କାର



ମିଶରର ସମ୍ରାଟ (ଫାରୋ) ରାମସେସ୍‌ଙ୍କ ରାଣୀ ନେଫାର୍ଟିଟିଙ୍କର ତିନିହଜାର ଦୁଇଶହ ବର୍ଷ ତଳର କବର ଭିତରୁ ସେ ବ୍ୟବହାର କରିଥିବା ଏକ ବିଶେଷ ଅଳଙ୍କାର ନିକଟରେ ଆବିଷ୍କୃତ ହୋଇଛି ।

# ଅଭିନବ ପରୀକ୍ଷା

ରାଜା ନରେନ୍ଦ୍ର ସିଂହ ଏପରି ଜଣେ କର୍ମଚାରୀ ନିଯୁକ୍ତ କରିବାକୁ ଚାହୁଁଥିଲେ, ଯିଏ କି ନିର୍ଲୋଭୀ ହୋଇଥିବ । ସେ କର୍ମଚାରୀ ତାଙ୍କ ରାଜ୍ୟ ସୀମାନ୍ତରେ ରହିବ ଏବଂ ସେଠାକାର ଆଦିବାସୀ ପ୍ରଜାଙ୍କଠାରୁ କର ଅସୁଲ କରିବ । କଥା କ'ଣ କି, ସେ ସରଳ ପ୍ରଜାଙ୍କଠୁଁ ନିୟମଠୁଁ ବେଶି କର ସଂଗ୍ରହ କରି ଆତ୍ମସାତ୍ କରିବାର ଲୋଭ କର୍ମଚାରୀମାନେ ସମ୍ବରଣ କରି ପାରୁ ନଥିଲେ ।

ରାଜାଙ୍କର ଚାରିଜଣ ଅମାତ୍ୟ ଚାରିଜଣ ଯୁବକଙ୍କୁ ସେ ପଦପାଇଁ ସୁପାରିସ୍ କଲେ । ମନ୍ତ୍ରୀ ସେମାନଙ୍କୁ ସହର ବାହାରେ ଗୋଟିଏ ପୁରୁଣା କୋଠାରେ ଦିନେ ସକାଳେ ହାଜର୍ ହେବାକୁ ଖବର ପଠାଇଲେ । ସେମାନେ କୋଠା ଆଗରେ ପହଞ୍ଚିଲେ । ମନ୍ତ୍ରୀ ବସିଥିଲେ କୋଠା ଭିତରେ ଅଗଣାରେ । କୋଠାର ଦ୍ୱାରଦେଶ ଓ ଅଗଣା ଭିତରେ ବେଶ୍ କିଛି ଦୂରତା ଥାଏ ।

ଦ୍ୱାରୀ ଜଣ ଜଣ କରି ଅଲଗା ଅଲଗା ଚାରିଜଣଙ୍କୁ ମନ୍ତ୍ରୀଙ୍କ ପାଖକୁ ପଠାଇଲା । ଚାରିଜଣ ଏକାଠି ହେବା ପରେ ମନ୍ତ୍ରୀ କହିଲେ, "ସୀମାନ୍ତରେ ଦରକାର ବେଳେ ଦୌଡ଼ିବାକୁ ପଡ଼ିବ । ମୋ ଚାରିପଟେ ଲଂଫ ଦେଇ ଦେଇ ଦୌଡ଼ି ପାରିବ ?"

ପ୍ରମଥ ନାମକ ଯୁବକ ଦୌଡ଼ିଲା । ଅନ୍ୟ ତିନିଜଣ ଗୋଡ଼ରେ ଯନ୍ତ୍ରଣା ହେଉଛି କହି ଠିଆ ହୋଇ ରହିଲେ । ମନ୍ତ୍ରୀ ପ୍ରମଥଙ୍କୁ ନେଇ ରାଜାଙ୍କ ଆଗରେ ଠିଆ କରାଇ କହିଲେ, "ମହାରାଜ, ଏହି ଯୁବକଙ୍କୁ ରଖନ୍ତୁ ।"

ରହସ୍ୟ ହେଲା, କୋଠାର ଦ୍ୱାର ଦେଶ ଓ ଅଗଣା ଭିତରେ ଅନ୍ଧାରୁଆ ସ୍ଥାନ ମାନଙ୍କରେ ପ୍ରତିଥର ମନ୍ତ୍ରୀ କିଛି କିଛି ଚକ୍ ଚକ୍ ଟଙ୍କା ରଖି ଦେଉଥିଲେ । କେବଳ ପ୍ରମଥ ଛଡ଼ା ବାକି ତିନିଜଣଯାକ ସେ ଟଙ୍କା ଉଠାଇ ପକେଟରେ ପୁରାଇଥିଲେ । ଲଂଫଝଂପ ଦେଲେ ସେସବୁ ଶବ୍ଦ କରିବ ବୋଲି ସେମାନେ ତାହା କଲେ ନାହିଁ ।





# ତଥାସ୍ତୁ ଦେବତା

ଗୋପାଳପୁର ଗାଁରେ ରହୁଥିଲା ଜୟ । ତା' ସ୍ତ୍ରୀ ନାମ ଲକ୍ଷ୍ମୀ । ଜୟ ନିଜେ କେତେ-ଦୂର ବୁଦ୍ଧିମାନ ସେକଥା ଅଲଗା । କିନ୍ତୁ ତା'ର ଭାରି ଇଚ୍ଛାଥିଲା, ତା' ସ୍ତ୍ରୀ ବୁଦ୍ଧିମତୀ ହେବ । ଦୈବକ୍ରୁ ଲକ୍ଷ୍ମୀ ଅତିଶୟ ସରଳ ଝିଅ । ସିଏ ଯାହା କହିଲେ ସିଏ ବିଶ୍ୱାସ କରିଯାଏ । ସମସ୍ତଙ୍କୁ ଦୟା କରେ । ତା'ର ଏ ମତିଗତିରେ ଜୟ ଭୀଷଣ ଚିଡ଼ିବାକୁ ଲାଗିଲା । ଏମିତି ସମୟ ଆସିଲା, ଯେତେବେଳେ ଲକ୍ଷ୍ମୀ ଯାହା କହିଲେ ବି ଜୟ ତାକୁ ବକେ । ଥରେ ଅଧେ ପାଖପଡ଼ୋଶୀମାନେ ଜୟକୁ ଏ ବିଷୟରେ ସଚେତ କରିଦେବାକୁ ଚେଷ୍ଟା କଲେ । କିନ୍ତୁ ଜୟ ସେମାନଙ୍କ ଉପରେ ବି ଚିଡ଼ିଲା । ସେମାନେ ଚୁପ୍ କଲେ ।

ଦିନେ ଜୟ ଆସି ତା' ସ୍ତ୍ରୀକୁ କହିଲା, "ଜଲଦି ରନ୍ଧାରନ୍ଧି କର । ଆଜି ମନ୍ଦର ଆଗରେ ଶାସ୍ତ୍ର ପ୍ରବଚନ ଅଛି । ମୁଁ ଶୁଣିବାକୁ ଯିବି । ଆରେ କାଲୁଣୀ, ଶୁଣୁଛୁଟି ?"

ଲକ୍ଷ୍ମୀ କହିଲା, "ଠିକ୍ ଅଛି । ବେଳ ବୁଡ଼ ସୁଦ୍ଧା ରୋଷେଇ ହୋଇଯିବ ।"

"ଠିକ୍ ଅଛି ? ଆରେ ପୋଡ଼ାମୁହାଁ । ଢେର କଥା କହି ଶିଖିଲୁଣି ଦେଖୁଛି ।" ଜୟ କଡ଼ା ଭାବରେ କହିଦେଇ ଚାଲିଗଲା ।

ସନ୍ଧ୍ୟା ବେଳକୁ ଜୟ ଆସି ତା' ସ୍ତ୍ରୀକୁ ଡାକିଲା । ଜବାବ୍ ପାଇଲା ନାହିଁ । ଘର ପଛପଟକୁ ଯାଇ ଦେଖିଲା ବେଳକୁ ତା' ସ୍ତ୍ରୀ ନିଜ ମୁହଁକୁ ପାଣିଛାଟି ଲାଗିଛି ।

"ଆରେ ପୋଡ଼ାମୁହାଁ ! କରୁଛୁ କ'ଣ ? ରୋଷେଇ ସରିଛି ?" ସେ ପଚାରିଲା ।

ଲକ୍ଷ୍ମୀ କାନ୍ଦ କାନ୍ଦ ହୋଇ ଉତ୍ତର ଦେଲା, "ରୋଷେଇ ଆରମ୍ଭ କରିନାହିଁ । ତୁମେ ଯିବା ପରଠୁଁ ମୋ ମୁହଁ କାହିଁକି ସତେ ଯେମିତି



ପୋଡ଼ି ଯାଉଛି । ମୁଁ ପାଣିରେ ମୁହଁ ଧୋଇ ଚାଲିଛି । କିନ୍ତୁ କେତେ ସମୟ ଏପରି କରିବ ? ବୋଧହୁଏ ଶୀଘ୍ର ମରିଯିବି । ମୋତେ କୌଣସି ବୈଦ୍ୟ ପାଖକୁ ନେଇ ଚାଲ ।"

ଲକ୍ଷ୍ମୀ ଯେ କେବେ ମିଛ କହେ ନାହିଁ କି ଛଳନା କରେ ନାହିଁ, ଏଥିରେ ଜୟର ସନ୍ଦେହ ନଥିଲା । ଲକ୍ଷ୍ମୀର ଭଲ ବ୍ୟବହାର ଓ ଦୟାଗୁଣ ଯୋଗୁଁ ଗାଁ ଲୋକେ ଜୟର କର୍କଶ କଥା ଘେନୁ ନଥିଲେ । ଲକ୍ଷ୍ମୀ କାମଦାମରେ ଅତ୍ୟନ୍ତ ପଟୁ ଥିଲା । ସତରେ ଯଦି ସେ ମରିଯିବ, ଜୟର ଅବସ୍ଥା କ'ଣ ହେବ ?

ଜୟ ଆଉ ବିଳମ୍ବ ନକରି ସଙ୍ଗେ ସଙ୍ଗେ ଲକ୍ଷ୍ମୀକୁ ନେଇ କବିରାଜ ପାଖକୁ ବାହାରିଗଲା । ମନ୍ଦିର ପାଖଦେଇ ଯିବା ବେଳକୁ ପ୍ରବଚନ ଆରମ୍ଭ ହୋଇଗଲାଣି । ବକ୍ତା କହୁଛନ୍ତି, "ଦେବୀ ସରସ୍ୱତୀଙ୍କ ଆଶୀର୍ବାଦରେହିଁ ଆମ୍ଭେମାନେ ବାକ୍‌ଶକ୍ତି ପାଇଛୁଁ । ଦେବୀ ସମସ୍ତଙ୍କ ପ୍ରତି ସଦୟ । ତାଙ୍କ ଦାନର ଅପବ୍ୟବହାର କରିବା ପାପ । ଆଉ ଯାହା କୁହ, କିନ୍ତୁ ନିର୍ଦ୍ଦୋଷ ଲୋକ ମନରେ ଆଘାତ ଦେବା ଭଳି କର୍କଶ କଥା ଉଚ୍ଚାରଣ କରିବ ନାହିଁ । ନ ବୁଝି ନ ଶୁଝି କଟୁକଥା କହିବା ଖାଲି ଯେ କହିବା ଲୋକର ଅହଙ୍କାର ସୂଚାଏ, ସେତିକି ନୁହେଁ, ତାହା ବାକ୍ ଶକ୍ତି ପ୍ରତି, ଦେବୀ ସରସ୍ୱତୀଙ୍କ ପ୍ରତି ଅପମାନ । ଆଉ ଗୋଟାଏ କଥା ମନେ ରଖିବା ଦରକାର । ଥରେ ଥରେ ବାତାବରଣ ଭିତର ଦେଇ 'ତଥାସ୍ତୁ ଦେବତା' ମାନେ ଯାଆଆସ କରୁଥାନ୍ତି । ତମ କଥା ଶୁଣି ସେମାନେ ଯଦି ତଥାସ୍ତୁ କହିଦେବେ, ତେବେ କଥା ସରିଲା । ତମେ ଯାହା କହିଥିବ, ତାହାହିଁ ଫଳିଯିବ । ସେଥିରେ ତମର ଅନିଷ୍ଟ ହେବ ।"

ଜୟ ଚମକି ପଡ଼ିଲା । ତେବେ ସେ ତରତର ହୋଇ ସ୍ତ୍ରୀକୁ ଧରି କବିରାଜଙ୍କ ଘରେ ପହଞ୍ଚିଗଲା ।

କବିରାଜ ସେତେବେଳେ ଭୋଜନରେ ବସିଥିଲେ । ତାଙ୍କ ଚାକର ଜୟ ଓ ତା' ସ୍ତ୍ରୀକୁ ବାରଣ୍ଡାରେ ବସିବାକୁ କହି ଭିତରକୁ ଚାଲିଗଲା । ଅଧଘଣ୍ଟାଏ ଗଲା । ଲକ୍ଷ୍ମୀ ଯନ୍ତ୍ରଣାରେ ଆର୍ତ୍ତନାଦ କରୁଥାଏ । ସ୍ତ୍ରୀକର

ବାହାରକୁ ଆସିବାକ୍ଷୁ ଜୟ ଚାଲୁ ପଚାରିଲା, "କବିରାଜଙ୍କ ଝିଅ କ'ଣ ଏପର୍ଯ୍ୟନ୍ତ ସରି ନାହିଁ ?"

"ସରିବ, ସରିବ । ସେ ଗୋଟି ତରକାରି ଖାଇ ସାରିଲେଣି । ବର୍ତ୍ତମାନ ଦୁଧ ଭାତ ଖାଉଛନ୍ତି ।" ଚାକର ଏହା କହି ଚାଲିଗଲା ।

କିଛି ସମୟ ପରେ ଚାକର ବାହାରିବାରୁ ଜୟ ପଚାରିଲା, "କ'ଣ, ଝିଅ ସରିଲା ?"

"ହଁ, ହଁ, ବର୍ତ୍ତମାନ ରାବିଡ଼ି ଖାଉଛନ୍ତି । ସରିଗଲାଣି ପ୍ରାୟ ।"

ଚାକର ଚାଲିଗଲା । ଜୟ ରାଗିଯାଇ ନିଜକୁ ନିଜେ କହିଲା, "କି ଲୋକରେ ବାବା !" ଠିକ୍ ସେତିକିବେଳେ କବିରାଜ ବାହାରି ଆସିଲେ ଓ ଥରେ ଲକ୍ଷ୍ମୀ ଆଡ଼େ ଅନାଇ ଦେଇ କହିଲେ, "ଚିକିତ୍ସା ଆରମ୍ଭ କରିବା ପୂର୍ବରୁ ପନ୍ଦର ଟଙ୍କା ଦେବାକୁ ହେବ ।"

ଜୟ ଆଶ୍ଚର୍ଯ୍ୟ ହେଲା । କବିରାଜ ତ ଏମିତି ଲୋକ ନଥିଲେ ? ହଠାତ୍ ଏଭଳି ବ୍ୟବହାର କରୁଛନ୍ତି କପରି ? ସେ ଟଙ୍କା ଧରି ଆସି ନଥିଲା । ଗାଁ କବିରାଜ । ସେ ସବୁବେଳେ ଆଗେ ଚିକିତ୍ସା କରନ୍ତି । ପରେ ପଇସା ନିଅନ୍ତି । ଏମିତି ବ୍ୟବହାର କରିବେ ବୋଲି କିଏ ଜାଣିଥିଲା ?

ସେ ରାସ୍ତାକୁ ଦୌଡ଼ିଗଲା । ଗାଁ ଲୋକେ ସମସ୍ତେ ବକ୍ତୃତା ଶୁଣିବା ନିମନ୍ତେ ମନ୍ଦିର ପ୍ରାଙ୍ଗଣକୁ ଯାଇଛନ୍ତି । ରାସ୍ତାରେ ବିଶେଷ କେହି ନାହାନ୍ତି । ଦୈବାତ୍ ପ୍ରଫୁଲ୍ଲ ସହ ତା'ର ଦେଖା ହୋଇଗଲା । "ପ୍ରଫୁଲ୍ଲ ! ଚୋଟି"





"ଟଙ୍କା ଅଛି ?" ସେ ପଚାରିଲା । ପ୍ରଫୁଲ୍ଲ ଧନୀ ଯୁବକ ଓ ସାଧାରଣତଃ ସବୁବେଳେ ତା' ଜାମିଜ ମୁଣିରେ ଟଙ୍କା ଥାଏ । ତେବେ ସେତେବେଳେ ନଥିଲା । ସେ କହିଲା, "ଆରେ ଭାଇ, ଟଙ୍କା ତ ନାହିଁ !"

"ତୁ ଗୋଟାଏ ଖଣ୍ଟ !" ରାଗିଯାଇ ଜମ୍ବୁ କହିଲା । ତତ୍‌କ୍ଷଣାତ୍ ପ୍ରଫୁଲ୍ଲର କ'ଣ ହେଲା କେଜାଣି, ସେ ଜମ୍ବୁକୁ ଧରି ତା' ଜାମିଜ ମୁଣିରେ ହାତ ପୂରାଇ ତାଠିଁ ସାମାନ୍ୟ ଯାହା ଟଙ୍କେ ଦୁଇଟଙ୍କା ଥିଲା, ସେତକ ବାହାର କରିନେଇ ଦୌଡ଼ି ପଳାଇଲା ।

ଜମ୍ବୁ ହତବମ୍ବ ହୋଇ କିଛି ସମୟ ଠିଆ ହୋଇ ରହି ତା'ପରେ କବିରାଜଙ୍କ ବାରନ୍ଦାକୁ ଲେଉଟି ଆସିଲା ଓ ଲକ୍ଷ୍ମୀକୁ ଧରି ଅନ୍ୟ ଗାଁରେ ଥିବା ଆଉ ଜଣେ କବିରାଜଙ୍କ ଘର ଆଡ଼େ ଚାଲିଲା । ଗୋଟିଏ ପଡ଼ିଆ ଭିତରଦେଇ ଯିବାକୁ ପଡ଼େ । ଲକ୍ଷ୍ମୀ କହିଲା, "ମୁଁ ଆଉ ଚାଲି ପାରୁନାହିଁ ।"

"ଚୁପ୍ କର ରାକ୍ଷସୀ !" କହିଲା ଜମ୍ବୁ । ତା'ପରେ ସେ ଯାହା ଦେଖିଲା, ସେଥିରେ ତା' ହଂସା ଉଡ଼ିଗଲା । ଲକ୍ଷ୍ମୀ କୁଆଡ଼େ ଗଲା କେଜାଣି, ତା' ସ୍ଥାନରେ ଠିଆ ହୋଇଥାଏ ଗୋଟିଏ ରାକ୍ଷସୀ । ସେ ଜମ୍ବୁ ଆଡ଼େ ହାତ ବଢ଼ାଇଲା । ଜମ୍ବୁ ଦୌଡ଼ି ପଳାଇବାକୁ ଲାଗିଲା । ରାକ୍ଷସୀ ପଛରେ ଦୌଡ଼ୁଥାଏ ।

ଦୁହେଁ ଯାଇ ଗୋଟାଏ ବଣ ପାଖରେ ପହଞ୍ଚିଲେ । ଜମ୍ବୁ ଆଉ ଦୌଡ଼ି ପାରିଲା ନାହିଁ, ତଳେ ପଡ଼ିଗଲା । ସେତିକିବେଳେ ସେ ଶୁଣିଲା ଗୋଟାଏ ମଧୁର କଣ୍ଠସ୍ୱର : "ଆରେ, ତୁ ଡରୁଛୁ କାହିଁକି ? ତୋ ସ୍ତ୍ରୀ ସିନା ତୋ କଥା ଅନୁସାରେ ରାକ୍ଷସୀ ହୋଇଯାଇଛି, ତା' ବୋଲି ସେ କ'ଣ ତୋତେ ଖାଇଦେବ ବୋଲି ଭାବୁଛୁ ? ନା, ନା; ସେ ସବୁଦିନ ଭଳି ତୋ ସହ ଘର କରି ରହିବ ।"

ଜମ୍ବୁ ଉଠି ପଡ଼ି ଅନାଇଲା । ଆଗରେ ଯୋଡ଼ିଏ ଦେବତା ଭଳି ଦିଶୁଥିବା ମୂର୍ତ୍ତି । ସେ ପଚାରିଲା, "ଆପଣମାନଙ୍କ ପରିଚୟ ?"

"ଆମେମାନେ 'ତଥାସ୍ତୁ ଦେବତା' । ଏଣେ ତେଣେ ବୁଲି କିଏ କ'ଣ କହୁଛି ଶୁଣି

ଓ ସେହି ଅନୁସାରେ କାମଟି କରୁ । କିଛି ସମସ୍ୟ ହେଲେ ଅଦୃଶ୍ୟ ଭାବରେ ତୋହର ସହ ଥିଲୁଁ ।" ଦୁଇ ଦେବତା କହିଲେ ।

ଲକ୍ଷ୍ମୀ ତା' ମୁହଁରେ ତାହାଁଙ୍କ ପ୍ରହାର ଯନ୍ତ୍ରଣା ଅନୁଭବ କଲା, କବିରାଜ ତାହାଁଙ୍କ ହଠାତ୍ ଆଗଭୁରା ଟଙ୍କା ମାଗିଲେ, ପ୍ରଫୁଲ୍ଲ ତାହାଁଙ୍କ ତା' ଟଙ୍କା ଛଡ଼ାଇ ନେଲା, ଲକ୍ଷ୍ମୀ ତାହାଁଙ୍କ ରାକ୍ଷସୀ ହୋଇଗଲା, ବର୍ତ୍ତମାନ ଏସବୁ ପରିଷ୍କାର ହୋଇଗଲା । ସେ ଲକ୍ଷ୍ମୀକୁ ପୋଡ଼ାମୁହିଁ, କବିରାଜଙ୍କୁ ଲୋଭୀ, ପ୍ରଫୁଲ୍ଲକୁ ଗୁଣ୍ଡା ଓ ପୁଣି ଲକ୍ଷ୍ମୀକୁ ରାକ୍ଷସୀ କହିବାରୁ ଏମିତି ହେଲା ।

"ହେ ଦେବତାମାନେ ! ମୋତେ କ୍ଷମା କରନ୍ତୁ । ମୁଁ ଆଉ ଜୀବନରେ କାହାପ୍ରତି କୁବାକ୍ୟ ପ୍ରୟୋଗ କରିବି ନାହିଁ । ମୋ ସ୍ତ୍ରୀକୁ ତା' ପ୍ରକୃତ ରୂପ ଫେରାଇ ଦିଅନ୍ତୁ । କବିରାଜ ଓ ପ୍ରଫୁଲ୍ଲ ମଧ୍ୟ ଭଲ ମଣିଷ ହୋଇ ଯାଆନ୍ତୁ ।" ଜମ୍ବୁ କାନ୍ଦି କାନ୍ଦି ପ୍ରାର୍ଥନା କଲା ।

"ତଥାସ୍ତୁ ।" କହି ଦେବତା ଦୁଇଜଣ ଅଦୃଶ୍ୟ ହୋଇଗଲେ ।

ଲକ୍ଷ୍ମୀ ସଙ୍ଗେ ସଙ୍ଗେ ତା' ପୂର୍ବ ରୂପ ଫେରି ପାଇଲା ଓ ସତେ ଅବା ଯେପରି ନିଦରୁ ଉଠିଛି, ପଚାରିଲା, "ଆମେ ଏଠି କାହିଁକି ?"

"ଘରକୁ ଚାଲ । ପରେ ସବୁ କହିବି ।" ଜମ୍ବୁ ଭଦ୍ର ଭାବରେ କଥାବାର୍ତ୍ତା କରିବା ଦେଖି ଲକ୍ଷ୍ମୀ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଆଶ୍ଚର୍ଯ୍ୟ ହେଲା । ଦୁହେଁ ଘରକୁ ଫେରିଲେ ।

ପରଦିନ କବିରାଜ ନିଜେ ତା' ଘରକୁ ଆସି ଦୁଃଖ ପ୍ରକାଶ କରି କହିଲେ, "ଗତକାଲି ରାତିରେ ମୋ ମୁଣ୍ଡ କାହିଁକି ଖରାପ ହୋଇ ଯାଇଥିଲା, ମୁଁ ବୁଝି ପାରୁନାହିଁ ।"

ପ୍ରଫୁଲ୍ଲ ଆସି ଜମ୍ବୁକୁ ତା' ପଇସା ଫେରାଇ ଦେଇ କହିଲା, "ମୁଁ କିପରି ତୋ ପ୍ରତି ଏମିତି ବ୍ୟବହାର କଲି ବୁଝିପାରୁ ନାହିଁ ।"

ଜମ୍ବୁ ଖାଲି ହସିଲା । ସେହି ଦିନଠୁ ଜମ୍ବୁ କର୍କଶ କଥା କହିବାର ଶୁଣାଯାଇ ନାହିଁ ।





# ନିର୍ଦ୍ଦୟରୁ ସଦୟ

ପୂର୍ବ କାଳରେ ଗୋଟିଏ ବଣ ପାଖରେ ଜଣେ ଶିକାରୀ ରହୁଥାଏ । ସବୁଦିନ ସେ ବଣରେ ବୁଲି ବୁଲି ହରିଣ ଶିକାର କରେ । ସାଧାରଣତଃ ତା' ତୀର ଅବ୍ୟର୍ଥ । ସେ କେବେହେଲେ ଖାଲି ହାତରେ ଘରକୁ ଫେରିବାର ଶାଁ । ଲୋକେ ଜାଣି ନଥିଲେ । ସବୁଦିନ ସେ ହରିଣ ମାରୁଥିବାରୁ ଲୋକେ ତାକୁ ନିଜ ନିଜ ଭିତରେ "ନିର୍ଦ୍ଦୟ" ବୋଲି ଡାକୁଥିଲେ ।

ଦିନେ ଶିକାରୀ ଅନେକ ସମୟ ଧରି ବଣରେ ବୁଲିବୁଲି କଲା କିନ୍ତୁ ଶିକାର ପାଇଲା ନାହିଁ । ହଠାତ୍ ତା' ଆଖିରେ ଗୋଟିଏ ହରିଣ ଛୁଆ ପଡ଼ିଲା । ସେ ତାକୁ ତୀର ମାରିଲା । ହରିଣ ଛୁଆଟି ଆହତ ହୋଇ ପଡ଼ିଯିବାରୁ ସେ ତାକୁ ଧରି ଘର ମୁହାଁ ଫେରିଲା ।

ସେ ବଣରେ ଜଣେ ଋଷି ରହୁଥିଲେ । ହଠାତ୍ ଶିକାରୀ ସହ ତାଙ୍କ ଭେଟ ହୋଇଗଲା । ଶିକାରୀ ଦେଖିଲା, ଋଷି ତା' ପଛେ ପଛେ ବୁଲୁଛନ୍ତି ଓ କହୁଛନ୍ତି, "ବୁଝୁଁଛି, ବୁଝୁଁଛି !"

"ଆପଣ କ'ଣ ବୁଝୁଁଛନ୍ତି ? କାହାକୁ ଏକଥା କହୁଛନ୍ତି ?" ଶିକାରୀ ପଚାରିଲା ।

"ହରିଣଛୁଆ କିଛି କହୁଥିଲା । ମୁଁ ତାକୁ ଉତ୍ତର ଦେଉଥିଲି ।" ଋଷି କହିଲେ ।

ଶିକାରୀ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "କାହିଁ, ମୁଁ ତ ସେ କିଛି କହିବାର ଶୁଣି ପାରୁନାହିଁ !"

ଋଷି କହିଲେ, "ଚାହିଁଲେ ଶୁଣି ପାରିବୁ । ତାକୁ ତଳେ ଥୋଇ ଦେ ।" ଶିକାରୀ ତାକୁ ତଳେ ଥୋଇ ଦିଅନ୍ତେ ଋଷି ତା' ଉପରେ ନିଜ କମଣ୍ଡଳୁରୁ ଟିକିଏ ପାଣି ସିଞ୍ଚିଦେଲେ । ହରିଣଛୁଆ କହିବାର ଶୁଣାଗଲା, "ମୋ ମାଆ

ମୋତେ କେତେ ଖୋଜିବ ଓ ମୋତେ ନ ପାଇ କେତେ କାନ୍ଦିବ !"

ଶିକାରୀ ସ୍ତବ୍ଧ ହୋଇ ଠିଆ ହୋଇ ରହିଲା ଓ କିଛି ଚେରମୂଳ ଆଣି ସେଥିରୁ ରସ ବାହାର କରି ହରିଣଛୁଆ ଦେହରେ ଲଗାଇଲା । ତା' କ୍ଷତ ଭଲ ହୋଇଗଲା । ସେ ଦୌଡି ଚାଲିଗଲା । ଋଷି ପଚାରିଲେ, "କ'ଣ ହେଲା ? ତାକୁ ଛାଡିଦେଲ ?"

"ହଁ ଆଜ୍ଞା, ମୋ ପୁଅଟି ହଜିଗଲେ ତା' ମା ଓ ମୁଁ ତାକୁ କେତେ ଖୋଜନ୍ତୁ । ସେଇକଥା ଭାବି ତାକୁ ଛାଡ଼ିଦେଲି । ଆଜି ଅବଶ୍ୟ ଆମ ଘରେ ଚୁଲିଜଳି ହୋଇପାରିବ ନାହିଁ । ହେଉ, ହେଲା, ଦିନଟିଏ କ'ଣ ଆମେ ଉପାସ ରହିପାଇ ପାରିବୁ ନାହିଁ ?" ଏହା କହି ଶିକାରୀ ଚାଲିଗଲା । ଶିକାରୀ ତୀର ମାରି ହରିଣ ଶିକାର କରିବା ଅଭ୍ୟାସ ତ୍ୟାଗ କରିବାକୁ ମନସ୍ଥ କଲା ଓ ଅନ୍ୟ କିଛି ଉପାୟରେ ଜୀବଜନ୍ତୁ ଧରିବା ନିମନ୍ତେ ଚିନ୍ତା କଲା ।

ପରଦିନ ସେ ବଣକୁ ଆସି ଜାଲ ପକାଇ ଗୋଟାଏ ବଡ଼ ହରିଣ ଧରିଲା । ତାକୁ ନେଇ ଯାଉଥିବା ବେଳେ, ପୁଣି ଋଷିଙ୍କ ସହ ଦେଖା ହୋଇଗଲା । "ଆଜ୍ଞା, ଏ ହରିଣ କ'ଣ କିଛି କହୁଛି ?" ସେ ପଚାରିଲା । ଋଷି କହିଲେ, "ତାକୁ ତଳେ ଛାଡ଼ ଦେ । ଦେଖିବା ।"

ଶିକାରୀ ତାକୁ ତଳେ ଛାଡିଦେଲା । ଋଷି ତା' ଉପରେ କମଣ୍ଡଳୁରୁ ପାଣି ଛିଟିକାଇ ଦେଲେ । ହରିଣ କହିବାର ଶୁଣାଗଲା, "ଏ



ସୁନ୍ଦର ଅରଣ୍ୟରେ ବୁଲି ବୁଲି ମୁଁ ଈଶ୍ୱରଙ୍କ ସୃଷ୍ଟିର ନାନା ଫୁଲ ଫଳ ଓ ପଶୁପକ୍ଷୀଙ୍କ ସୌନ୍ଦର୍ଯ୍ୟ ଦେଖି ମୁଗ୍‌ଧ ହେଉଥିଲି । ହାୟ, ତାହା ସମ୍ଭବପର ହେବ ନାହିଁ । ହେଉ, ଜଣଙ୍କ ପରିବାରର ଭୋକ ତ ମେଣ୍ଟାଇ ପାରିବ !"

ଶିକାରୀ ଏହା ଶୁଣିବା ମାତ୍ରେ ହରିଣକୁ କହିଲା, "ତୁ ଯା, ବଣରେ ବୁଲୁଥା ।" ହରିଣ ଦୌଡ଼ି ଦୌଡ଼ି ଚାଲିଗଲା । ଶିକାରୀ ଋଷିଙ୍କୁ କହିଲା, "ଗତ କାଲି ଆମେ ନଖାଇ ରହିଥିଲୁଁ । ଆଜି ବି ସେମିତି ରହିଯିବୁଁ ।" ଏହା କହି ସେ ଚାଲିଗଲା ।

ଋଷି ତା' ଆଡ଼େ ଅନାଇ ଖାଲି ଥରେ ହସିଲେ । କିଛି କହିଲେ ନାହିଁ ।

ତୃତୀୟ ଦିନ ଶିକାରୀ ଆଉ ବଣ ଭିତରକୁ ଆସିଲା ନାହିଁ । ଋଷି ତା' କୁଡ଼ିଆ ପାଖକୁ ଯାଇ ପଚାରିଲେ, "କହୋ ? ଶିକାର କରିବାକୁ ଗଲନାହିଁ କାହିଁକି ?"

ଶିକାରୀ କହିଲା, "ଆଜ୍ଞା, ବଡ଼ ଦୁର୍ବଳ ହୋଇ ପଡ଼ୁଛୁ । ଚାଲିବାକୁ ଚେଷ୍ଟା କଲାବେଳକୁ ମୁଣ୍ଡ ବୁଲାଇ ଦେଉଛି । ଦୁଇଦିନ ହେଲା ଆମେ ଖାଇନାହୁଁ ।"

ଋଷି କହିଲେ, "ଦେଖ ମୁଁ କ'ଣ ଆଣିଛୁ ।"

ଶିକାରୀ ଦେଖିଲା, ଋଷି ତନୋଟି ଦୁଧିଆଳ ଗାଈ ସବତ୍ସ ନେଇ ଆସିଛନ୍ତି । "ଏମାନେ ପ୍ରଚୁର ଦୁଧ ଦେବେ । ତାକୁ ବିକିବୁ । ସେଥିରୁ ଦହି, ଲହୁଣୀ ତିଆରି କରି ମଧ ଖାଇବୁ, ବିକିବୁ । ଚିନ୍ତା ନାହିଁ ।" ଋଷି ଏହା କହି ଶିକାରୀକୁ ଆଶିର୍ବାଦ ଦେଇ ପୁଣି ବଣ ଭିତରକୁ ଚାଲିଗଲେ ।

ଶିକାରୀ ଆନନ୍ଦରେ କଥା କହିପାରିଲା ନାହିଁ । ସେ ଯେ ଖାଲି ଦୁଧ ଦହି ବିକି ଭଲରେ ଚଳିଲା, ତାହା ନୁହେଁ, ଗରିବ ଲୋକଙ୍କୁ ମାଗଣା ଦେଲା ମଧ୍ୟ । ଲୋକେ ତାକୁ "ସଦୟ" ବୋଲି କହିବାକୁ ଲାଗିଲେ ।






[ ୧୦ ]

**[ମୂଢ଼ ରାଜାଙ୍କୁ ପ୍ରଭାବିତ କରି ନିଜକୁ ଯାଦୁକର ବୋଲି ପରିଚୟ ଦେଉଥିବା ଜଣେ ଚତୁର ବ୍ୟକ୍ତି ରାଜାଙ୍କୁ ଗୁମ୍ଫା ଭିତରେ ବନ୍ଦୀ କରି ନିଜେ ରାଜ-ପୋଷାକ ପିନ୍ଧି ବାହାରିଲା। ତେଣେ, ବହୁଦୂରରେ ତପସ୍ୱୀଙ୍କ ସହ ରାଜୁ ଯାଇ ପହଞ୍ଚିଥାଏ ଏକ ଅଜଣା ନୂତନ ମୁଲ୍କରେ। ତା'ପରେ···]**

ରାଜୁ ନିମ୍ନ ଦେଶର ଏକ ଗିରିସଙ୍କଟ ଭିତରକୁ ଅନାଇ ଦେଖିଲା, ଗୋଟାଏ ଭୀଷଣାକୃତି ମଣିଷ ତା' ଆଗରେ ଥିବା ଗୋଟିଏ ଉଜ୍ଜ୍ୱଳ ଗୋଲକ ଉପରେ ନଳୀଟିଏ ଥାପି ଫୁଙ୍କ ଦେଉଛି। ଥରେ ଫୁଙ୍କି ଦେଇ ସେ ଗୋଲକ ଆଡ଼େ ଅନାଏ ଓ ବିକଟ ଭାବରେ ହସେ। ତା' ମୁହଁ ଭିତରେ ଝଲସି ଉଠେ ଡାହାଣୀ ଆଲୁଅ।

ଗୋଲକଟି କ୍ରମେ ରକ୍ତ-ଲୋହିତ ଦେଖାଗଲା। ତା'ପରେ ପୁଣି ତାହା କଳା ପଡ଼ିଗଲା ଓ ତହିଁରୁ ବାହାରିଲା ଏକ ପ୍ରକାର ଧୂଆଁ। ଲୋକଟି ତା' ଉପରେ ହାମୁଡ଼ି ପଡ଼ି ସେ ଧୂଆଁ ମନ ପୂରାଇ ନିଜ ନିଃଶ୍ୱାସରେ ଟାଣିବାକୁ ଲାଗିଲା। କ୍ରମେ ତା' ହସ ଆହୁରି ବିକଟ ହେଲା। ରାତିରେ ଗଧିଆ ଆଖିରେ ଆଲୁଅ ପଡ଼ିଲେ ତାହା ଯେମିତି

ମନୋଜ ଦାସ



ଭୀଷଣ ଦେଖାଯାଏ, ତା' ଆଖି ସେମିତି ଦେଖାଗଲା ।

"ଏହାର ଅର୍ଥ ?" ରାଜୁ ବିସ୍ମିତ ହୋଇ ତପସ୍ୱୀଙ୍କୁ ପଚାରିଲା ।

"ସେ ଗିରିସଙ୍କଟ ସ୍ୱପ୍ନ-ରାଜ୍ୟର ଅଂଶ-ବିଶେଷ । ପୃଥିବୀର ଲୋକେ ଯେଉଁ ପ୍ରକାର ସ୍ୱପ୍ନମାନ ଦେଖୁଛନ୍ତି, ଏଠାରେ ତା'ର ପ୍ରତିଫଳନ ହେଉଛି । ଏକା ଧରଣର ସ୍ୱପ୍ନମାନେ ଗୋଟାଏ ନିର୍ଦ୍ଦିଷ୍ଟ ରୂପ ନେଇଥାନ୍ତି । ତମେ ବର୍ତ୍ତମାନ ଯାହା ଦେଖୁଛ, ତାହା ହଜାର ହଜାର ସ୍ୱପ୍ନର ସାରାଂଶ । ଏ ଧରଣର ସ୍ୱପ୍ନ ଦେଖିଥିବା ଲୋକେ ନିଜକୁ ଖୁବ୍ ଚତୁର ମନେ କରନ୍ତି, କିନ୍ତୁ ବାସ୍ତବରେ ସେମାନେ ବୁଦ୍ଧୁ । ସେମାନେ ପୃଥିବୀକୁ ବିଷାକ୍ତ କରନ୍ତି—ଖାଦ୍ୟ ଦ୍ରବ୍ୟରେ ବିଷ ମିଶାଇ, ମାରଣାସ୍ତ୍ର ନିର୍ମାଣ କରି ଓ ସେସବୁ କିଣିବା ନିମନ୍ତେ ମଣିଷଙ୍କୁ ପ୍ରବର୍ତ୍ତାଇ—ଏମିତି ବିଭିନ୍ନ ଭାବରେ । ଖାଲି ଲାଭ କରିବାରେ ସେମାନେ ମଜ୍ଜି ରହିଥାନ୍ତି । ସେ ଲୋକଟା କେମିତି ଫୁଲି ଉଠୁଛି ଲକ୍ଷ୍ୟ କରି ଦେଖ ।"

ରାଜୁ ନିମ୍ନ ଦେଶର ସେ ଗିରିସଙ୍କଟ ଆଡ଼େ ପୁଣି ଅନାଇଲା । ଲୋକଟି ଗୋଲକ-ନିର୍ଗତ ଧୂଆଁ ନିଶ୍ୱାସରେ ନେଇ ଖୁସି ହୋଇ ଗୋଟାଏ ଘୁଷୁରି ଭଳି ଶବ୍ଦ କରୁଥିଲା । ତା' ପେଟ ବଢି ଚାଲିଥାଏ । ଚାହୁଁ ଚାହୁଁ ତାହା ଏଡ଼େ ବଡ଼ ହୋଇଗଲା ଯେ ଦୁଇ ହାତ ଯୋଗେ ଆଉ ସେ ପେଟକୁ କୁଣ୍ଢାଇ ଧରିବା ସମ୍ଭବପର ହେଲାନାହିଁ ।

"ଲୋକଟି ତ କଷ୍ଟ ପାଉଛି ବୋଲି ମନେ ହୁଏ !" ରାଜୁ ଆଶ୍ଚର୍ଯ୍ୟ ହୋଇ କହିଲା ।

"ଠିକ୍ । ଯେଉଁମାନେ କେବେ ବି ଭଲ ଚିନ୍ତା କରନ୍ତି ନାହିଁ, ନିର୍ମଳ ମୁକ୍ତ ପବନରେ ନିଶ୍ୱାସ ନେବାର ଅଧିକାର ସେମାନଙ୍କର ନାହିଁ ।" ତପସ୍ୱୀ କହିଲେ ।

ସେତେବେଳକୁ ସେ ଲୋକ ଲଟୁ ଭଳି ଘୂରୁଥାଏ । ପ୍ରକାଣ୍ଡ ପେଟଟି ତା'ର ସତେ ଅବା ଉଚ୍ଛୁଳ ପଡିବ ! ମୁହଁରେ ତା'ର କ୍ରୋଧ ଏବଂ ହତାଶା । ରାଜୁ ତା' ଆଡୁ ଦୃଷ୍ଟି ଫେରାଇ ନେଲା ଓ ଉପତ୍ୟକାର ଶେଷ ପ୍ରାନ୍ତ ଆଡ଼େ ଅନାଇଲା । ସେ ଦେଖିଲା, ଭୂପୃଷ୍ଠର ତମସା ଭେଦ କରି ଆଲୋକର ଏକ ଏକ

ଫୁଙ୍କାର ଉପରକୁ ଉଠି ଯାଉଛନ୍ତି । ସେସବୁର ପୃଷ୍ଠଭୂମିରେ ଗୋଟିଏ ବିଶାଳ ବରଗଛ ଥିବା ଯୋଗୁଁ ସେମାନଙ୍କର ସେଭଳି ଊର୍ଦ୍ଧ୍ୱଗତି ଦିଶୁଥିଲା ବଡ଼ ସୁନ୍ଦର । କିନ୍ତୁ ଅଧିକାଂଶ ଆଲୋକ ଗଛର ଅଧାଅଧି ଉଚ୍ଚତାକୁ ଉଠିବା ବେଳକୁ ମଉଳି ଯାଉଥିଲେ । କଦବା କେମିତି ଗୋଟାଏ ଅଧାଏ ଆଲୋକ ଗଛର ଉଚ୍ଚତା ଟପି ଉପରକୁ ଯାଉଥିଲେ । କିନ୍ତୁ କେତେକ ଶାଗୁଣା ଧରଣର ପକ୍ଷୀ ଝାମ୍ପି ପଡ଼ି ଭୀଷଣ ବେଗରେ ପକ୍ଷ ବିଞ୍ଚି ସେମାନଙ୍କୁ ଲିଭାଇ ଦେଉଥିଲେ ।

"ଏସବୁ ଆଲୋକ ହେଲେ ଶାନ୍ତି ଓ ନିଗାଢ଼ ସୁଖର ସ୍ୱପ୍ନ । ଯେଉଁ ଗୁଡ଼ିକ ବେଶି ଊର୍ଦ୍ଧ୍ୱକୁ ଯାଇପାରିଲେ ନାହିଁ, ସେଗୁଡ଼ିକ ଦୁର୍ବଳ ସ୍ୱପ୍ନ; ଯେଉଁମାନେ ସୁଖ ଚାହାନ୍ତି କିନ୍ତୁ ତା'ର ସନ୍ଧାନ କରନ୍ତି ଭୁଲ ମାର୍ଗରେ, ସେହିମାନଙ୍କ ସ୍ୱପ୍ନ ।" କହିଲେ ତପସ୍ୱୀ ।

"କିନ୍ତୁ ଆଲୋକ ସବୁକୁ ସେ ହିଂସ୍ର ଭାବରେ ଲିଭାଇ ଦେବା ନିମନ୍ତେ ସେ ପକ୍ଷୀ ଗୁଡ଼ିକ କାହୁଁ ଆସିଲେ ?"

"ସେମାନେ ବାତାବରଣରେ ଥିବା ଦୁଷ୍ଟ ଶକ୍ତି । ମଣିଷ ସୁଖୀ ହେଉ, ଏହା ସେମାନେ ଚାହାନ୍ତି ନାହିଁ ।" ତପସ୍ୱୀ ଟିକିଏ ରହି କହିଲେ, "ବର୍ତ୍ତମାନ ତୁମେ ସନ୍ତୋଷର ରାଜ୍ୟରେ ପ୍ରବେଶ କରୁଛ । ଆଗରେ ଯେଉଁ ଭୟଙ୍କର ଗର୍ତ୍ତ, ତାକୁ ଗୋଟିଏ ଲମ୍ଫରେ ଅତିକ୍ରମ କରିବାକୁ ହେବ । ଅନ୍ୟ ପନ୍ଥା ନାହିଁ । ପାରିବ ତ ?"

ସେ ଗର୍ତ୍ତ ଉପରୁ ଥରେ ଆଖି ବୁଲାଇ ନେଇ ରାଜୁ କହିଲା, "ନା ଆଜ୍ଞା ।"





"ଆଚ୍ଛା, ମୁଁ ଯଦି ତମ ହାତ ଧରି ତମ ସହ ଲଂଫ ଦିଏଁ ?" ପଚାରିଲେ ତପସ୍ୱୀ ।

"ତା'ହେଲେ ନିଶ୍ଚୟ ପାରିବ ।"

"ବେଶ୍ । ତମର ଆସ୍ଥାହିଁ ତମକୁ ସେପାରିକୁ ନେଇଯିବ । ଆଖି ବନ୍ଦ କର । ତା'ପରେ ତମର ସବୁ ଶକ୍ତି ପ୍ରୟୋଗ କରି ଲଂଫ ଦିଅ । ପ୍ରସ୍ତୁତ ?"

ରାଜୁ ମୁଣ୍ଡ ହଲାଇ ପ୍ରସ୍ତୁତ ବୋଲି ଜଣାଇଲା ।

ତପସ୍ୱୀ ରାଜୁର ହାତ ଧରିଲେ । ଉଭୟେ ଏକ ସମୟରେ ଲଂଫ ଦେଲେ ।

ରାଜୁର ମନେ ହେଲା, ସେ ଯେମିତି ମେଘମାଳା ଭିତରୁ ଖସି ଆସୁଥିବା ଜଳବିନ୍ଦୁଟିଏ ଭଳି ହାଲୁକା ହୋଇଯାଇଛି । ସେ ଆଖି ଖୋଲି ଦେଖିଲା, ଚତୁର୍ଦ୍ଦିଗରେ ରଙ୍ଗୀନ୍ ଉଦ୍ୟାନ । ଉପରେ, ଏକ ଦିଗନ୍ତରୁ ଅନ୍ୟ ଦିଗନ୍ତ ଯାଏ ବ୍ୟାପିଛି ଉଜ୍ଜ୍ୱଳ ଇନ୍ଦ୍ରଧନୁ । ମଧୁର କଳରବରେ ବ୍ୟସ୍ତ ପକ୍ଷୀମାନେ ଦିଶୁଥିଲେ ଗୋଟାଏ ଗୋଟାଏ ଉଡ଼ନ୍ତା ଫୁଲ ଭଳି । ଏପରିକି ମେଘମାନେ ବି ବହୁରଙ୍ଗ ବିଶିଷ୍ଟ ଫୁଲତୋଡ଼ା ଭଳି ମନେ ହେଉଥିଲେ । ଯେଉଁ ସବୁ ରଙ୍ଗରେ ଉଦ୍ୟାନର ବୃକ୍ଷଲତା, ପକ୍ଷୀମାନେ ଓ ମେଘମାଳା ରଂଜିତ ହୋଇଥିଲେ, ସେସବୁରୁ ଅନେକ ରଙ୍ଗ ରାଜୁ କେବେ ଦେଖି ନଥିଲା । ସେସବୁ ଅପୂର୍ବ ରଙ୍ଗ ସାତରଙ୍ଗର ମିଶ୍ରଣରୁ ଉଦ୍‌ଭବ ହୋଇପାରେନା ବୋଲି ସେ ବୁଝିଲା । ଯେଉଁ ନୂତନ ରଙ୍ଗ ଉପରେ ତା'ର ଦୃଷ୍ଟି ପଡ଼ୁଥିଲା, ସେ ରଙ୍ଗ ତା' ଭିତରେ ଏକ ଅଜଣା ଅନୁଭବର କମ୍ପନ ସୃଜୁଥିଲା । ବଡ଼ ପୁଲକପ୍ରଦ ସେସବୁ ଅନୁଭୂତି ।

ପବନର ପ୍ରତି ତରଙ୍ଗ ଯେମିତି ଗୋଟାଏ ପବିତ୍ର ଶିହରଣ ଆଣି ଦେଉଥିଲା । ପକ୍ଷୀମାନଙ୍କର ସବୁ ଧ୍ୱନି, ବୃକ୍ଷଲତାମାନଙ୍କର ପ୍ରତି କମ୍ପନ ରାଜୁ ହୃଦୟରେ ତୋଳୁଥିଲା ସୁଖର ସ୍ପନ୍ଦନ ।

କିନ୍ତୁ କାହିଁଗଲେ ତପସ୍ୱୀ ? ହଠାତ୍ ସେଭଳି ଜଣେ ଦିଗ୍‌ଦର୍ଶକଙ୍କୁ ହରାଇଲେ ଦୁଃଖ ହେବାର କଥା । କିନ୍ତୁ ରାଜୁ ଅନୁଭବ କଲା, ସେ ରାଜ୍ୟର ବାତାବରଣରେ ଦୁଃଖ ନାହିଁ । ସେ ତପସ୍ୱୀଙ୍କ ଅଭାବ ଅନୁଭବ କରିବା ସତ୍ତ୍ୱେ ବିମର୍ଷ ବା ବିଚଳିତ ବୋଧ କଲା ନାହିଁ । ଅନେକ ଦିନ ପରେ ସେ ପିଲାବେଳେ ଶିଖିଥିବା ଗୀତଟିଏ ବୋଲିଲା— ହୃଦୟର ଆନନ୍ଦ ପ୍ରକାଶ କରିଦେବା ନିମନ୍ତେ ।



ସୁନ୍ଦରୀ ତରୁଣୀଟିଏ । ବିସ୍ମୟ ଓ ପୁଲକରେ ଉଦ୍‌ଭାସିତ ତା' ମୁହଁ ।

ତରୁଣୀ ହସିଲା । ସେମିତି ମଧୁର ହସ ରାଜୁ କେବେ ଦେଖି ନଥିଲା ।

ରାଜୁ ଗୀତ ବନ୍ଦ କରି ତା' ଆଡ଼େ ଅନାଇ ରହିଲା । ରାଜୁ ବା ତା' ତୁଳନାରେ କେମିତି କମ୍ ବିସ୍ମିତ ବା କମ୍ ପୁଲକିତ ହୁଅନ୍ତା ?

"ବନ୍ଦ କଲ କାହିଁକି ? ଗାଅ ନା !" ଅଧୈର୍ଯ୍ୟ ହୋଇ କହିଲା ତରୁଣୀ ।

ରାଜୁ ଆଖି ଫେରାଇନେଇ ପାରିଲା ନାହିଁ ।

"ଆଶ୍ଚର୍ଯ୍ୟ !" ରାଜୁ କହିପକାଇଲା ।

"କ'ଣ ଆଶ୍ଚର୍ଯ୍ୟ ?"

"ତୁମକୁ ପ୍ରଥମଥର ପାଇଁ ଦେଖୁଛି । ଅଥଚ ତୁମର ଏ ହସ ମୋତେ ଏତେ ପରିଚିତ ଲାଗୁଛି କିପରି ? ତୁମେ କ'ଣ କେବେ କନକଉପତ୍ୟକା ନାମକ ରାଜ୍ୟ ଆଡ଼େ ବୁଲି ଯାଇଥିଲ ?"

ତରୁଣୀ ହସିଲା । "ନା, ମୋର ଏ ଉପତ୍ୟକା ବାହାରକୁ ଯିବାର ପ୍ରୟୋଜନ ହୋଇନାହିଁ । ଏ ସ୍ଥାନ ତୁମକୁ କିପରି ଲାଗୁଛି ?"

"ଏଡ଼େ ମନୋରମ ଉପତ୍ୟକା ଥାଇପାରେ, ଏକଥା ମୁଁ କଳ୍ପନା କରି ନଥିଲି । ରୁହ, ରୁହ, ହଠାତ୍ ମୋର ମନେ ପଡ଼ୁଛି ଗୋଟାଏ କଥା । ମୁଁ ଅନେକ ସମୟରେ ଜନପଦ ଛାଡ଼ି ଝରଣା ଓ ଫୁଲ ଫଳ ଭରା ଗୋଟିଏ ବନସ୍ତ ଭିତରେ ସମୟ କଟାଉଥାଏଁ । ଥରେ ଥରେ ଗୋଟାଏ ଅପୂର୍ବ ସୁନ୍ଦର ପକ୍ଷୀ ମେଘମାଳା ଭେଦକରି

ଏକଦା ଜଣେ ନିଃସଙ୍ଗ ପଥିକ ହଠାତ୍ କେମିତି ସୂର୍ଯ୍ୟଙ୍କୁ ସାଥିରୂପେ ପାଇଯାଇଥିଲା, ଗୀତଟିର ପ୍ରଥମ ଦୁଇଧାଡ଼ି ସେହି କଥା ବ୍ୟକ୍ତ କରୁଥିଲା ।

ରାଜୁ ସେ ଦୁଇଧାଡ଼ି ବୋଲିବା ବେଳକୁ ସୂର୍ଯ୍ୟୋଦୟ ହେଲା । ପରବର୍ତ୍ତୀ ଦୁଇଧାଡ଼ିରେ ପବନ କେମିତି ସେ ପଥିକକୁ ବାଟ ଦେଖାଇ ନେଇଗଲା, ସେ ବର୍ଣ୍ଣନା ଥିଲା । ରାଜୁ ସେତକ ବୋଲିସାରିବା ବେଳକୁ ଗଛଲତା ଉପରଦେଇ ପବନର ଏକ ଉଚ୍ଛ୍ୱାସ ସେମିତି ବହିଗଲା । ଅଗଣନ ପତ୍ର ମୃଦୁ ସଂଳାପରେ ମାତି ଉଠିଲେ ।

ରାଜୁ ଗୀତ ବୋଲୁଥାଏ । ହଠାତ୍ ତା'ର ମନେହେଲା, କେହି ଜଣେ ତା'ର ଗୀତ ଶୁଣୁଛି । ଚାହିଁବା ବେଳକୁ ତା' ପାଖରେ ବସିଛି ଅତି

ସେଠି ଆସି ପହଞ୍ଚି ଯାଉଥାଏ ଓ କଦମ୍ବ ଉପରେ ବସିପଡ଼ି କହୁଥାଏ, "ଦୂର ରାଇଜରେ ଅଛି ଏକ ରାଜକନ୍ୟା—ଏକ ରାଜକନ୍ୟା !" ଅନ୍ତତଃ ସେ ଏଇଆ କହୁଛି ବୋଲି ତା' ଧ୍ୱନିରୁ ମୋର ମନେ ହେଉଥାଏ । ସଙ୍ଗେ ସଙ୍ଗେ ମୋ ଆଖି ଆଗରେ ଭାସି ଉଠୁଥାଏ ଗୋଟିଏ ହସ ହସ ମୁହଁ । ସତେ ଅବା ତାହା ତୁମର ମୁହଁ !"

"ସତେ ? ଅବଶ୍ୟ ମୁଁ ଏ ରାଜ୍ୟର ରାଜକନ୍ୟା । ଆଉ ଅନେକ ସମୟରେ ମୁଁ ସ୍ୱପ୍ନରେ ତୁମେ ବୋଲୁଥିବା ଏ ସ୍ୱର ଶୁଣିଛି । କେତେଥର ଭାବଛି, ମୁଁ ହେଲେ ଏମିତି ସ୍ୱର ସୃଷ୍ଟି କରି ପାରନ୍ତି ! କିନ୍ତୁ ମୁଁ ଜାଣେ, ଏ ରାଜ୍ୟ ଟପିଯିବା ପରେ ଏକ ମୁଲକରେ ଅଛନ୍ତି ଜଣେ ଦେବୀ । ତାଙ୍କଠାରୁ ବର ଆଣି ନପାରିଲେ ଆମେ ଏଭଳି କିଛି କରିପାରିବା ନାହିଁ ।" ତରୁଣୀ ଦୀର୍ଘଶ୍ୱାସ ଛାଡ଼ି କହିଲା ।

"ମୁଁ ତ ଗୀତଟିଏ ମାତ୍ର ବୋଲୁଥିଲି !"

"ଗୀତଟିଏ ମାତ୍ର ? ହାୟ, ମୁଁ ଥରୁଟିଏ ହେଲେ ଗୀତଟିଏ ବୋଲି ପାରନ୍ତି ! ସେଥିପାଇଁ ମୁଁ ମୋର ସବୁ କିଛି ଦେଇ ଦେବାକୁ ପ୍ରସ୍ତୁତ ।"

"କିନ୍ତୁ ତୁମ କଣ୍ଠସ୍ୱର ଏଡ଼େ ମଧୁର । ତମେ ଗୀତ ବୋଲୁନାହିଁ କାହିଁକି ?"

"ଆମେ ଗୀତ ବୋଲି ପାରୁନା ! ଆମେ ସେ ଗୁଣର ଅଧିକାରୀ ନୋହୁଁ ।"

ରାଜୁ ଅବାକ୍ ହେଲା । ସେ ରାଜକନ୍ୟା ସ୍ୱୟଂ ସତେ ଅବା ଗୋଟିଏ ଅପୂର୍ବ ସଙ୍ଗୀତର



ମାନବୀ-ରୂପ । ଅଥଚ ସେ ଗୀତ ଗାଇବାକୁ ଅକ୍ଷମ ! ସେ ଚମତ୍କାର ସନ୍ତୋଷମୟ ରାଜ୍ୟରେ କେହି ଗୀତ ବୋଲିବାକୁ ସକ୍ଷମ ନୁହନ୍ତି !

ରାଜୁ ନିଜକୁ ମନେ ପକାଇ ଦେଲା : ସେ ରାଜ୍ୟର କେହି ମଣିଷ ନୁହନ୍ତି । ସେ ଆହୁରି ବି ମନେ ପକାଇଲା—ଥରେ ତପସ୍ୱୀ ତାକୁ କହିଥିଲେ, "ପଶୁ କଥା କହିପାରେ ନାହିଁ, ମଣିଷ ପାରେ । କିନ୍ତୁ ମଣିଷଙ୍କ ଅବସ୍ଥା ଦେଖ । କଥା ନାମରେ କିଏ ବା ସାପ ଭଳି ଫଁ ଫଁ ହେଉଛି, କିଏ ବା ମାଙ୍କଡ଼ ଭଳି ଖତେଇ ହେଉଛି ତ କିଏ ବା କୁକୁରଙ୍କ ଭଳି ଭୁକି ଚାଲିଛି !"

ମଣିଷ କେଡ଼େ ଭାଗ୍ୟବାନ, ରାଜୁ ସେକଥା ଉପଲବ୍ଧି କଲା । ମଣିଷ ହସିପାରେ, ଗୀତ

ଗାଇପାରେ, କେତେ ଆଶ୍ଚର୍ଯ୍ୟ କାମ କରିପାରେ । କିନ୍ତୁ ତା'ର ସବୁ ପ୍ରତିଭା ଓ ଗୁଣକୁ ବିକଳାଙ୍ଗ କରିଦିଏ କୌଣସି ଅଭିଶାପ । ତପସ୍ୱୀ କହିଥିଲେ, ତାହା ମଣିଷର ଅଜ୍ଞାନତା ।

"ରାଜକନ୍ୟା! ତମକୁ ମୁଁ ଗୋପନରେ କହିପାରେଁ—ମୁଁ ସେହି ଦେବୀଙ୍କୁ ଭେଟିବା ଉଦ୍ଦେଶ୍ୟରେ ଚାଲିଛି; କିନ୍ତୁ ସେଠାକୁ ଯିବାର ବାଟ ଜଣାନାହିଁ । ମୋତେ ବାଟ ଦେଖାଇ ଦେବ? ତମ ପାଇଁ ମୁଁ ନେଇ ଆସିବି ଏମିତି ବର, ଯାହା ଫଳରେ ତମେ ଗୀତ ଗାଇ ପାରିବ ।" ରାଜୁ ନମ୍ର ଭାବରେ କହିଲା ।

"ତମକୁ ବି ମୁଁ ଗୋପନରେ କହେଁ: ଅଦୂରରେ ସେଇ ଯେଉଁ ନୀଳ ପର୍ବତ, ତାହା ଶୀଖରରେ ରହିଛି ଗୋଟିଏ ଅନନ୍ୟ ବୃକ୍ଷ । ବର୍ଷକରେ ଥରେ ତହିଁରେ ଫଳେ ଫଳଟିଏ । ତାକୁ କୁହାଯାଏ ନକ୍ଷତ୍ର-ଫଳ । ଯିଏ ସେ ଫଳ ଖାଇବ, ସିଏ ସେ ଅଜ୍ଞାତ ରାଜ୍ୟରେ ପ୍ରବେଶ କରି ପାରିବ ।" ରାଜକନ୍ୟା କହିଲେ ।

"ତମ ରାଜ୍ୟର କେହି ସେ ଫଳ ଖାଇ ନାହିଁ କିପରି?"

ରାଜକନ୍ୟା ହସି କହିଲେ, "ତମେ ମଣିଷ-ମାନେ ଖାଇପାର । ଆମେ ଖାଉ ନା ।"

"ଖାଅନା! ତାହା ସମ୍ଭବ? ତେବେ ବଞ୍ଚିରୁହ କିପରି, ଶିଶୁଟିଏ ବଡ଼ ହୁଏ କିପରି?"

"ଫୁଲ ଭଳି । ଆମେ ସୂର୍ଯ୍ୟକିରଣରୁ, ପବନରୁ, ଆକାଶରୁ ଆମର ଜୀବନୀ ଶକ୍ତି ସଂଗ୍ରହ କରୁଁ । କାହିଁକି? ତମେ କ'ଣ ଏଠାକୁ ଆସିବା ପରେ କ୍ଷୁଧା ଅନୁଭବ କରୁଛ?"

ରାଜୁ ଚମକି ପଡ଼ି କହିଲା, "ନା, ତ!" ତା'ପରେ ସେ ନିଜକୁ ସମ୍ଭାଳି ନେଇ ପୁଣି କହିଲା, "କିନ୍ତୁ ବିନା କ୍ଷୁଧାରେ ବି ତମେ ଫଳଟାଏ ତ ଖାଇ ପାରନ୍ତ!"

"ନା । ଆମେ ପାରୁ ନା । ଏ ରାଜ୍ୟରେ କେହି କୌଣସି ଅକର୍ତ୍ତବ୍ୟ କାର୍ଯ୍ୟ କରେ ନା ।"

ସେତିକିବେଳେ ହରିଣଟିଏ ଦୌଡ଼ି ଯାଉ-ଥିବାର ଦେଖାଗଲା । (କ୍ରମଶଃ)





# ଅଦ୍ଭୁତ ଅସ୍ତ୍ର

ନିଶା ଗରଜୁଥାଏ । ଭୁହାକୁ ଭୁହା ଶୀତଳ ପବନ ହାଙ୍କୁ ଝିପି ଝିପି ବର୍ଷା ହେଉଥାଏ । ଆଖପାଖର ଗଛଲତାମାନେ ସତେ ଅବା ଚପା କଣ୍ଠରେ ନିଜ ନିଜ ଭିତରେ କୌଣସି ଖବର ଆଦାନ ପ୍ରଦାନ କରୁଥା'ନ୍ତି । ଘଡ଼ଘଡ଼ ଓ ଶ୍ୱାନଶ୍ୱାପଦଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମାତ୍ର ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷ ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ଶୂନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା, ଏ ଦୁର୍ଯୋଗପୂର୍ଣ୍ଣ

## ବେତାଳ କଥା



ରାତିରେ ତମେ ରାଜପ୍ରାସାଦର ସୁଖ ସମ୍ଭୋଗ ଛାଡି ଏଠି କି ପ୍ରକାର ସିଦ୍ଧି ଲାଭ ସକାଶେ ଏ କାମ କରୁଛ, ମୁଁ ଜାଣେନା । କିନ୍ତୁ ମନେ ରଖ, ସୁଯୋଗ ପାଇ ମଧ୍ୟ ତାକୁ ଛାଡିଦେବା ଭଳି ମଣିଷ ଏ ପୃଥିବୀରେ ଅଛନ୍ତି । ତମେ ତାଙ୍କ ଭିତରୁ ଜଣେ ନୁହଁ ତ ? କଥାଟି ବୁଝାଇଦେବା ନିମନ୍ତେ ତମକୁ ଗୋଟାଏ ଦୃଷ୍ଟାନ୍ତ ଦେଉଛି । ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।”

ବେତାଳ ଗପିଲା : ମଳୟୁ ଦେଶରେ ରାଜୁତି କରୁଥାନ୍ତି ରାଜା ବିଜେନ୍ଦ୍ର ଦେବ । ଥରେ ତାଙ୍କ ରାଜ୍ୟ ସୀମାନ୍ତରେ ଗୋଟିଏ ମୁଲକରେ ଘନ ଘନ ଦଙ୍ଗା ହାଙ୍ଗାମା ଲାଗିବାର ଦେଖାଗଲା । ରାଜ୍ୟର ଅନ୍ୟ ସବୁ ଅଞ୍ଚଳରେ ଶାନ୍ତି ଥିବା ସତ୍ତ୍ୱେ ଗୋଟିଏ ଅଞ୍ଚଳରେ କାହିଁକି ଏଭଳି ଅଶାନ୍ତି ଉପଦ୍ରବ ଲାଗି ରହିବ, ସେକଥା ରାଜା ବୁଝି-ପାରିଲେ ନାହିଁ । ତେବେ ମନ୍ତ୍ରୀ ଏହା ଭିତରେ ତାଙ୍କ ଦକ୍ଷ ଗୁପ୍ତଚରମାନଙ୍କୁ ପଠାଇ କଥା କ'ଣ ବୁଝି ନେଲେ । ମଳୟୁର ପ୍ରତିବେଶୀ ରାଜ୍ୟ ମଧୁଗଡ଼ର ରାଜା ଛଦ୍ମବେଶରେ କିଛି କିଛି ଚର ପଠାଇ ମଳୟୁରେ ଅଶାନ୍ତି ସୃଷ୍ଟି କରୁଛନ୍ତି । ବିଶୃଙ୍ଖଳା ଓ ଆତଙ୍କ ଲାଗି ରହିଲେ ମଧୁଗଡ଼ ପକ୍ଷରେ ମଳୟୁର ସେ ଅଞ୍ଚଳ ଦଖଲ କରିନେବା ସହଜ ହେବ—ଏହାହିଁ ବୋଧହୁଏ ମଧୁଗଡ଼ ରାଜାଙ୍କର ଭିତିରି ଉଦ୍ଦେଶ୍ୟ ଥିଲା ।

ଦିନେ ରାଜା ଓ ମନ୍ତ୍ରୀ ଏ ବିଷୟରେ ଆଲୋଚନା କରୁଛନ୍ତି, ସେତିକିବେଳେ ଦୂରବର୍ତ୍ତୀ ସିନ୍ଧୁ ରାଜ୍ୟର ଜଣେ ବଣିକ ରାଜାଙ୍କୁ ଭେଟିବା ସକାଶେ ନିବେଦନ ପଠାଇଲେ । ରାଜା ତାଙ୍କୁ ଡକାଇଲେ । ବଣିକ କହିଲେ, “ମହାରାଜ, ମୁଁ ଗୋଟିଏ ଅପୂର୍ବ ଅସ୍ତ୍ର ଉଦ୍‌ଭାବନ କରିଛି । ଦେଖନ୍ତୁ ।” ଏହା କହି ସେ ରାଜାଙ୍କ ହାତକୁ ଖଣ୍ଡିଏ ନଳୀ ବଢ଼ାଇ ଦେଲେ । ରାଜା କହିଲେ, “ଏହା ଅସ୍ତ୍ର ଭଳି ଲାଗିବା ତ ଦୂରର କଥା, ଖେଳଣା ଭଳି ଲାଗୁଛି ।”

ବଣିକ କହିଲେ, “ମହାରାଜ ! ଏହା ତଳ ପଟେ ଅଙ୍ଗୁଳି ଚୁପି ଯାହା ଆଡ଼କୁ ଲକ୍ଷ୍ୟ କରି ଅଙ୍ଗୁଳି ଛାଡିଦେବେ, ସେ ଯେତେ ବଡ଼ ପ୍ରାଣୀ ହେଲେ ବି ତତ୍‌କ୍ଷଣାତ୍ ମରିଯିବ । କଥା କ'ଣ

କ, ଏହା ଭିତରେ ଗୋଟିଏ ଗୁପ୍ତ ସୂକ୍ଷ୍ମ ବିଷ ରହିଛି, ସେଥିରୁ ସୂତା ଭଳି ସରୁ ଛିଅଟିଏ ଯାଇ ଆପଣଙ୍କ ଲକ୍ଷ୍ୟ ଦେହରେ ଆଘାତ କରିବ । ଗୋଟିଏ ଚୋଟିଏ ନଳୀ ଶହେଥର ଲେଖାଏଁ କାମ ଦେବ ।"

ରାଜା ବଣିକଙ୍କ କଥାରେ ସତରେ ଯିବେ କି ନା ଭାବୁଛନ୍ତି, ମନ୍ତ୍ରୀ କହିଲେ, "ଆଚ୍ଛା, ଉଦ୍‌ଭାବକ ମହାଶୟ, ଆପଣ ଏହା ରାଜାଙ୍କ ଜମା ରଖିଯା'ନ୍ତୁ । ରାଜା ଆଜି ରାସ୍ତାରେ ଯିବେ । ସୁଯୋଗ ପାଇଲେ ଏହା ପରୀକ୍ଷା କରିବେ । ତିନିଦିନ ପରେ ଆସନ୍ତୁ ।"

ବଣିକ ରାଜି ହୋଇ ଚାଲିଗଲେ । ସେଦିନ ଉପରଓଳି ରାଜା ତାଙ୍କ ରାଜ୍ୟର ଗୋଟିଏ ବଣୁଆ ମୁଲକକୁ ଯିବାର ଥିଲା । ବଣ ପାଖରେ ଥିବା କୋଠିରେ ସେ ରାତି ଯାପନ କଲେ । ପରଦିନ ବଣକୁ ଗଲେ ଶୀକାର ବେଳେ ନଳୀଟି ବ୍ୟବହାର କରିବେ ବୋଲି ସେ ଭାବିଥିଲେ । ନଳୀଟି ପାଖରେ ରଖି ସେ ଶୋଇଥାନ୍ତି, କିନ୍ତୁ ନିଦ ଆସୁ ନଥାଏ । ହଠାତ୍ ମଝି ରାତିରେ କେହି କୋଠିରେ ପଶିବାର ଅନୁଭବ କରି ସେ ଅନାଇଲେ । ଦେଖିବା ବେଳକୁ ମୁହଁ ଲୁଚାଇ ଦୁଇଜଣ ଲୋକ ତାଙ୍କ ଆଡ଼େ ଅଗ୍ରସର ହେଉଛନ୍ତି । "କିଏ ?" ରାଜା ପ୍ରଶ୍ନ କଲେ । ଲୋକ ଦୁଇଟି ସଙ୍ଗେ ସଙ୍ଗେ ଛୁରୀ ବାହାର କଲେ । ରାଜା ନଳୀଟି ଉଠାଇ ନେଇ ସେ ଦୁହିଁଙ୍କୁ ପରେ ପରେ ଲକ୍ଷ୍ୟ କରି ଦୁଇଥର ଅଙ୍ଗୁଳି



ଚିପି ଛାଡ଼ିଦେଲେ । ଦୁଇଜଣଯାକ ତଳେ ପଡ଼ିଗଲେ । ଅନ୍ୟ କୋଠରିରୁ ପାହରିମାନେ ଦୌଡ଼ି ଆସିଲେ । ଦେଖିବା ବେଳକୁ ସେ ଦୁଇଜଣ ରାଜାଙ୍କ ଦେହରକ୍ଷୀ । ମଧୁଗଡ଼ ରାଜ୍ୟର ରାଜାଙ୍କଠୁଁ ଲାଞ୍ଚ ନେଇ ରାଜାଙ୍କୁ ମାରି ଦେବାକୁ ଉଦ୍ୟତ ହେଉଥିଲେ ।

ରାଜା ସେ ଅଦ୍ଭୁତ ନଳୀର କରାମତି ଦେଖି ମୁଗ୍‌ଧ ହେଲେ । ସେ ପରଦିନ ରାଜଧାନୀକୁ ଫେରିଗଲେ ଓ ବଣିକଙ୍କୁ ଡକାଇ ବହୁତ ସମ୍ମାନ ଓ ପୁରସ୍କାର ଦେଲେ ।

· "ମହାରାଜ, ପୁରସ୍କାର ପାଇଁ ଧନ୍ୟବାଦ । ଏଭଳି ଅସ୍ତ୍ର ଯଦି ଆପଣଙ୍କ ରାଜ୍ୟରେ ହଜାରେ ବା ଦୁଇହଜାର ରହିବ, ତେବେ କୌଣସି ଶତ୍ରୁ



ଆପଣଙ୍କ ରାଜ୍ୟ ଆକ୍ରମଣ କରିବାକୁ ସାହସ କରିବ ନାହିଁ । ଆପଣ ବ୍ୟବସ୍ଥା କଲେ ମୁଁ ଏଇଠାରେ ଏହାର କାରଖାନା କରିବି ଓ ଅସ୍ତ୍ର ଯୋଗାଇ ଦେବି । ଏହା ବ୍ୟୟସାପେକ୍ଷ ନିଶ୍ଚୟ । କିନ୍ତୁ ଏହାର ଉପକାର ଅପରିସୀମ ବୋଲି ବୁଝୁଥିବେ ।" ବଣିକ କହିଲେ ।

ରାଜା ଏଥିରେ ଉତ୍ସାହିତ ହୋଇ କିଛି କହିବାକୁ ଯାଉଥିଲେ । କିନ୍ତୁ ମନ୍ତ୍ରୀ ହଠାତ୍ ପ୍ରଶ୍ନ କଲେ, "ଆଚ୍ଛା ବଣିକ ମହୋଦୟ, ଆପଣଙ୍କ ଦେଶର ରାଜା ଜଣେ ଜ୍ଞାନୀ ତଥା ବୁଦ୍ଧିମାନ ବ୍ୟକ୍ତି ବୋଲି ଆମେ ଜାଣୁଁ । ଆପଣ ତାଙ୍କୁ କେତେ ଅସ୍ତ୍ର ବିକି କରିଛନ୍ତି ? ତାଙ୍କର ବି ତ ବହୁତ ଶତ୍ରୁ ଅଛନ୍ତି । ସେ ତାଙ୍କ ରାଜ୍ୟବାସୀଙ୍କୁ ଆପଣଙ୍କ ଉଦ୍ଭାବିତ ଅସ୍ତ୍ରରେ ସଜ୍ଜିତ କଲେ ଦେଶର ଉପକାର ହୁଅନ୍ତା ନାହିଁ କି ?"

"ଆପଣ ଠିକ୍ କଥା କହୁଛନ୍ତି । ଆମ ସିନ୍ଧୁ ଦେଶର ରାଜା ଜଣେ ବିଚକ୍ଷଣ ବ୍ୟକ୍ତି ବୋଲି ଆପଣଙ୍କ ଭଳି ମୋର ମଧ୍ୟ ଧାରଣା ଥିଲା । କିନ୍ତୁ ମୁଁ ତାଙ୍କୁ ବାରମ୍ବାର ଏ ଅସ୍ତ୍ର ବିଷୟରେ କହିଲେ ମଧ୍ୟ ସେ ମୋତେ କୌଣସି ଉତ୍ସାହ ଦେବା ତ ଦୂରର କଥା, ବରଂ ଏ ଅସ୍ତ୍ର ତିଆରି ବନ୍ଦ କରିବାକୁ ପରାମର୍ଶ ଦେଲେ ଓ ମୋତେ ଅନ୍ୟ କୌଣସି କାମରେ ନିଯୁକ୍ତ ଦେବାର ପ୍ରସ୍ତାବ ରଖିଲେ ।" ବଣିକ କହିଲେ ।

ମନ୍ତ୍ରୀ କିଛି ନ କହି ରାଜାଙ୍କ ଆଡ଼େ ଅନାଇ ଖାଲି ଅଳ୍ପ ହସିଲେ । ରାଜା ବଣିକଙ୍କୁ କହିଲେ, "ଭଦ୍ରେ, ଆପଣଙ୍କୁ ମୁଁ ଯେଉଁ ପୁରସ୍କାର ଦେଲି, ସେଥିରେ ସନ୍ତୁଷ୍ଟ ହୋଇ ଚାଲିଯାଆନ୍ତୁ । ଏ ଅସ୍ତ୍ର ନିର୍ମାଣ ଦିଗରେ ମୁଁ ଆପଣଙ୍କୁ ସହାୟତା କରିବା ସମ୍ଭବପର ନୁହେଁ । ଆପଣଙ୍କ ରାଜାଙ୍କ ଭଳି ମୁଁ ମଧ୍ୟ କହୁଛି, ଆପଣ ମୋ ରାଜ୍ୟରେ ଅନ୍ୟ କୌଣସି କାମରେ ରହନ୍ତୁ । ମୁଁ କାମ ଯୋଗାଇ ଦେବି ।"

ବଣିକ ଚାଲିଗଲେ । ରାଜା ଓ ମନ୍ତ୍ରୀ ଏହାପରେ ସୀମାନ୍ତକୁ ଯାଇ ପ୍ରଜାମାନଙ୍କୁ ବିଦେଶୀ ଗୁପ୍ତଚର ଓ ଚକ୍ରାନ୍ତ ବିଷୟରେ ସତର୍କ କରାଇଦେଲେ । ଯେପରି ମଧୁଗଡ଼ରୁ ଦୁଷ୍ଟ ଲୋକେ ପଶି ଆସି ରାଜ୍ୟରେ ଅଶାନ୍ତି ସୃଷ୍ଟି କରି

ନ ପାରିବେ, ସେ ଢଙ୍ଗରେ ଅନ୍ୟାନ୍ୟ ବ୍ୟବସ୍ଥା କଲେ । କ୍ରମେ ଅବସ୍ଥା ସୁଧୁରିଗଲା ।

ବେତାଳ ଟିକିଏ ଚୁପ୍ ରହି ତା'ପରେ କଣ୍ଠସ୍ୱର ତୀବ୍ର କରି ରାଜା ବିକ୍ରମଙ୍କୁ ପ୍ରଶ୍ନ କଲା, "ମୋର ଗୋଟିଏ ସନ୍ଦେହ ରହିଛି । ସୀମାନ୍ତରେ ଶତ୍ରୁ ପକ୍ଷ ଉପଦ୍ରବ କରୁଥିଲେ । ପରେ ପରେ ହୁଏତ ସେମାନେ ମଳୟ ରାଜ୍ୟ ଆକ୍ରମଣ କରନ୍ତେ । ରାଜା ସେ ଅଦ୍ଭୁତ ଅସ୍ତ୍ର ସାହାଯ୍ୟରେ ଅକ୍ଳେଶରେ ଶତ୍ରୁ ପକ୍ଷକୁ ଖତମ କରି ପାରନ୍ତେ । ତାହା ନକରି ସେ ନିଜେ ସୀମାନ୍ତକୁ ଯାଇ ଲୋକଙ୍କୁ ସତର୍କ କରାଇବାର ଆବଶ୍ୟକତା କ'ଣ ଥିଲା ? ସେ ବା ଅସ୍ତ୍ର ତିଆରି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲେ କିଆଁ ? ରାଜା ! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତିଥିବା ସତ୍ତ୍ୱେ ଯଦି ନିରୁତ୍ତର ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ସବୁ ରାଜ୍ୟର ଶତ୍ରୁ ଭୟ ଥାଏ । କୌଣସି ରାଜ୍ୟ ସବୁବେଳେ ନିରାପଦ ନଥାଏ । ତେବେ ଥରେ ଶତ୍ରୁ ଦମନ କରିବା ପାଇଁ ସିନା ରାଜା ସେ ଅଦ୍ଭୁତ ଅସ୍ତ୍ରର ବ୍ୟବହାର କରନ୍ତେ, କିନ୍ତୁ ତା'ପରେ ସେ ଅସ୍ତ୍ର ତ ତାଙ୍କର ଲୋକଙ୍କ ହାତରେ ରହନ୍ତା ! ଲୋକେ ସେ ଅସ୍ତ୍ରକୁ ଯଥେଚ୍ଛା ବ୍ୟବହାର କରନ୍ତେ । କିଏ କାହା ଉପରେ ଟିକିଏ ଖପା ହୋଇଗଲେ, ସେ ଅସ୍ତ୍ର ବ୍ୟବହାର କରନ୍ତା । ଲୋକଙ୍କ ଚେତନା ଯାହା, ସେଥିରେ ଏ ଅସ୍ତ୍ର ଯୋଗୁଁ ରାଜ୍ୟ ବିଦେଶୀ ଶତ୍ରୁଠୁଁ ଯେତିକି ନିରାପଦ ହୋଇପାରନ୍ତା, ହୁଏତ ରାଜ୍ୟ ଭିତରେ ତାହା ତୁଳନାରେ ବହୁତ ଅଧିକ ଅଶାନ୍ତି ଓ ଆତଙ୍କ ବଢିଯା'ନ୍ତା । ତେଣୁ ମନ୍ତ୍ରୀଙ୍କ ଇଙ୍ଗିତରେ ରାଜା ବଣିକଙ୍କ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରି ବୁଦ୍ଧିମତ୍ତାର ପରିଚୟ ଦେଲେ ।"

ରାଜା ବିକ୍ରମଙ୍କ ଉତ୍ତରଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)





# କ'ଣ ଲୋଡ଼ା

"ଆଉ ଏ ଜୀବନରେ କିଛି ହେବ ନାହିଁ !"

ସେଦିନ ରାଗିଯାଇ ଶ୍ରୀଧର ଚିତ୍କାର କରି ଘର ଭିତରେ ଏହା କହିଲା ।

ଆଜିକାଲି ସେ ମଧ୍ୟେ ମଧ୍ୟେ ଏଭଳି ମନ୍ତବ୍ୟ ଦେଉଥିଲା । ସେ ଯେ କାହାରି ବିରୁଦ୍ଧରେ ଏଭଳି କହୁଥିଲା, ତାହାନୁହେଁ, ଖାଲି ନିଜ ଅସନ୍ତୋଷକୁ ପ୍ରକାଶ କରିବା ଥିଲା ତାହାର ଉଦ୍ଦେଶ୍ୟ । ତେବେ ସେ ଏଭଳି କହିବା ଫଳରେ ପରିବାରର ଅନ୍ୟମାନେ ବି ବିଷର୍ଣ୍ଣ ବୋଧ କରୁଥିଲେ । ବିଶେଷତଃ ତା' ସ୍ତ୍ରୀ ବଡ଼ ଉଦାସ ଦେଖା ଯାଉଥିଲା । ସେଦିନ ସେ ସବୁଦିନ ଅପେକ୍ଷା କଣ୍ଠସ୍ୱର ଅଧିକ ଉଚ୍ଚ କରି ଏକଥା କହିଲା ।

ହଠାତ୍ ବାହାରୁ କେହି କହିଲେ, "କାହିଁକି ? କ'ଣ ହେଲା କି ?" ଶ୍ରୀଧର ଆଶ୍ଚର୍ଯ୍ୟ ହୋଇ ବାହାରି ଆସି ଦେଖିଲା, ଜଣେ ସାଧୁ ଠିଆ ହୋଇଛନ୍ତି । ସେ ସାଧୁଙ୍କୁ ପ୍ରଣାମ କଲା । ସାଧୁ କହିଲେ, "ପୁଅ ! କିଛି ଖାଇବାକୁ ଦେଇପାରିବୁ ? ମୋତେ ବହୁତ ଭୋକ କଲାଣି ।"

ଶ୍ରୀଧର ସାଧୁଙ୍କୁ ଆଦର କରି ଘର ଭିତରକୁ ନେଇଗଲା ଓ ଖାଇବାକୁ ଦେଲା । ସାଧୁ କହିଲେ, "ଆଚ୍ଛା କହିଲୁ, ତୋର କ'ଣ ଦରକାର ?"

ପ୍ରଥମେ ଶ୍ରୀଧର ସଙ୍କୋଚ କଲା । ସେ କହିଲା, "ଗୁରୁଜୀ ଆଜ୍ଞା, ଆମଭଳି ଅଧମ ସଂସାରୀ ଲୋକଙ୍କ ଜୀବନରେ ସବୁବେଳେ ଅଭାବ ଅସୁବିଧା ଲାଗି ରହିଥାଏ । ଆପଣଙ୍କୁ ସେସବୁ ବାଜେ କଥା କହି ବିବ୍ରତ କରିବି କାହିଁକି ?"

"ନା, ନା, ମୋତେ କୁହ । ମୋ ଭଳି ଲୋକକୁ ଯାହା କିଛି କହିପାର । ମୋ ପାଇଁ ସବୁ ସମସ୍ୟା ସମାନ ।" ସାଧୁ କହିଲେ ।

"ନିଜ ମନକଥା ନିଜକୁ ଅଜଣା"

"ମହାଭାଗ ! ମୋର ଦରକାର ଟଙ୍କା । ବେପାରରେ ଯେତିକି ପରିଶ୍ରମ କରୁଛି, ସେ ତୁଳନାରେ ଉପାର୍ଜନ ଅତି କମ । ଖଣ୍ଡିଏ ଭଲ ଘର କରି ପାରୁନାହିଁ ।" ଶ୍ରୀଧର କହିଲା ।

"ବେଶ୍ ! ଆଜଠାରୁ ତୋର ଶ୍ରୀବୃଦ୍ଧି ଆସୁ ହେବ ।" ଏହା କହି ସାଧୁ ଚାଲିଗଲେ ।

ସାଧୁ ଚାଲିଯିବା ପରେ ଶ୍ରୀଧର ମନରେ ସନ୍ଦେହ ହେଲା, ସତରେ କ'ଣ ସାଧୁଙ୍କ କଥା ଫଳିବ ? ସାଧୁଙ୍କୁ ତା' ଦୁଃଖକଥା କହି ସେ ଭୁଲ୍ କରିନାହିଁ ତ ? ସାଧୁସନ୍ଥମାନେ ଦୟା-ପରବଶ ହୋଇ ଭଲ କଥା କହିଦେବେ । ସେମାନଙ୍କ କଥା ନ ଫଳିଲେ ସେମାନଙ୍କରିହିଁ ଖରାପ ହେବ । ଶ୍ରୀଧର ଠିକ୍ କଲା କି ଭୁଲ୍ କଲା ବୁଝିପାରିଲା ନାହିଁ ।

ସତକୁ ସତ କିନ୍ତୁ ଶ୍ରୀଧରର ଅବସ୍ଥା ବଦଳିଗଲା । ବେପାରରେ ହଠାତ୍ ଉନ୍ନତି ହେବାକୁ ଲାଗିଲା । ପାଞ୍ଚବର୍ଷ ଭିତରେ ସେ ଗୋଟିଏ ନୂଆ ଘର ତୋଳିଲା ।

ପାଞ୍ଚବର୍ଷ ପରେ ପୁଣି ଦିନେ ସାଧୁ ଆସି ତା' ଘରେ ପହଞ୍ଚିଲେ । ଶ୍ରୀଧର ତାଙ୍କୁ ଅଭ୍ୟର୍ଥନା ଜଣାଇଲା । ସାଧୁ ପଚାରିଲେ, "କାହିଁ, ତୋ ମୁହଁରେ ହସ ହସ ଭାବ ତ ଦେଖୁ ନାହିଁ ! କୋଠା ତ ତୋଳିଛୁ, ଆୟ ତ ଭଲ ଭାବରେ ହେଉଛି । ସମସ୍ୟା କ'ଣ ?"

"ମହାଭାଗ ! ଏସବୁ ଥାଇ ହେବ କ'ଣ ? ମୋର ପିଲାପିଲି ନାହାନ୍ତି ।" ଶ୍ରୀଧର କହିଲା ।

"ଓଃ, ବେଶ୍ । ପିଲାପିଲି ହେବେ । ଚିନ୍ତା କରନାହିଁ ।" ଏହା କହି ସାଧୁ ଚାଲିଗଲେ ।



ସେହିବର୍ଷ ଶ୍ରୀଧର ଗୋଟିଏ ପୁତ୍ର ସନ୍ତାନର ପିତା ହେଲା । ଦୁଇବର୍ଷ ପରେ ପୁଣି ହେଲା ତା'ର କନ୍ୟା ଲାଭ ।

ପାଞ୍ଚବର୍ଷ ପରେ ସାଧୁ ଆସି ପହଞ୍ଚିଲେ ଓ ପଚାରିଲେ "ପିଲାପିଲି ତ ହେଲେ, ମୁହଁରେ ହସ ନାହିଁ କାହିଁକି ?"

"ଆଜ୍ଞା, ପିଲାପିଲି ଦୁଇଟା ଅବଶ୍ୟ ହେଲେ, କିନ୍ତୁ ପରେ ପରେ ସ୍ତ୍ରୀର ଦେହ ଖରାପ । ପିଲାଙ୍କ ତତ୍ତ୍ୱ ନେବ କିଏ ? ଆପଣ ତାକୁ ସୁସ୍ଥ କରି ଦିଅନ୍ତୁ ।" ଶ୍ରୀଧର କହିଲା ।

"ଆଚ୍ଛା ହେଉ । ତୋର ଯଦି ସେଇଆ ଦରକାର, ତେବେ ସେଇଆ ହେବ ।" ଏହା କହି ସାଧୁ ଚାଲିଗଲେ ।

ପ୍ରତିଥର ସାଧୁ ଚାଲିଯିବା ପରେ ଶ୍ରୀଧର ଭାବେ, ସେ ସାଧୁଙ୍କୁ ବାରମ୍ବାର ବର ମାଗି ଭୁଲ୍ କରୁନାହିଁ ତ ?

ଆଉ ପାଞ୍ଚବର୍ଷ ଗଲା ଓ ସାଧୁ ଆସି ପୁଣି ପହଞ୍ଚିଗଲେ । ଶ୍ରୀଧର ତାଙ୍କୁ ପ୍ରଣାମ କଲା ଓ ଘର ଭିତରକୁ ଡାକିନେଲା । ସାଧୁ ପଚାରିଲେ, "ସ୍ତ୍ରୀ ଭଲ ଅଛି ତ ? ତେବେ ମନ ଖରାପ କରିଛୁ କାହିଁକି ? ତୋର ଆଉ କ'ଣ ଲୋଡ଼ା ?"

"ଆଜ୍ଞା, ସ୍ତ୍ରୀର ସ୍ୱାସ୍ଥ୍ୟ ପୁରା ଭଲ ହୋଇଯିବା ମାତ୍ରେ ସେ ଖାଲି କଥାରେ କଥାରେ ମୋ ଉପରେ ରାଗୁଛି । ପୁଅଟାକୁ ଦଶବର୍ଷ ପୂରିଲାଣି, କିନ୍ତୁ ଅକ୍ଷରଟିଏ ଶିଖିଲା ନାହିଁ । ମୋତେ ଏଥିରେ ଶାନ୍ତି ମିଳିବ କାହିଁ ? ମୋତେ ଶାନ୍ତି ଦିଅନ୍ତୁ ।"

ସାଧୁ ହସିଲେ ଓ କହିଲେ, "ଏକଥା ମୋତେ ତ ପ୍ରଥମ ଦିନହିଁ କହିପାରିଥାନ୍ତୁ । ତୁ ଶାନ୍ତି ନ ଚାହିଁ ଏତେ କଥା ଚାହିଁଥିଲୁ କାହିଁକି ?"

"ମୁଁ ମୂର୍ଖ !" କହିଲା ଶ୍ରୀଧର ।

ସାଧୁ ତାକୁ କିପରି ଭଗବାନଙ୍କ ଉପରେ ସବୁ ଛାଡି ଶାନ୍ତିରେ ରହିବାକୁ ହୁଏ, ସେ ରହସ୍ୟ ଶିଖାଇଦେଲେ ଓ ବିଦାୟ ନେଲେ ।





ପ୍ରାଚୀନ ସାହିତ୍ୟର କାହାଣୀ

# ମୁଦ୍ରା ରାକ୍ଷସ-୪

ରାଜା ଚନ୍ଦ୍ରଗୁପ୍ତ ଯେପରି ଚାଣକ୍ୟଙ୍କୁ ସହ୍ୟ କରୁ ନାହାନ୍ତି, ଦରବାରରେ ସେହିପରି ଅଭିନୟ କଲେ । ଚାଣକ୍ୟ ମଧ୍ୟ ରାଗିଯିବାର ଛଳନା କରି ରାଜଧାନୀ ଛାଡି ଚାଲିଗଲେ । ପ୍ରକୃତରେ ନନ୍ଦରାଜାଙ୍କ ବିଚକ୍ଷଣ ମନ୍ତ୍ରୀ ରାକ୍ଷସଙ୍କୁ ନିଜ ପକ୍ଷକୁ ଆଣିବା ଥିଲା ଉଦ୍ଦେଶ୍ୟ ।

ଶତ୍ରୁ ରାଜା ମଳୟକେତୁ ଶୁଣିଲେ କି ଚନ୍ଦ୍ରଗୁପ୍ତ ଓ ଚାଣକ୍ୟଙ୍କ ଭିତରେ ମନୋମାଳିନ୍ୟ ଦେଖା ଦେଇଛି । ମଗଧ ରାଜ୍ୟ ଆକ୍ରମଣ କରିବା ନିମନ୍ତେ ଏହାହିଁ ପ୍ରକୃଷ୍ଟ ସମୟ ବୋଲି ମନେ କରି ସେ ଦିଗରେ ମଳୟକେତୁ ଓ ତାଙ୍କର ମନ୍ତ୍ରୀ ହୋଇଥିବା ରାକ୍ଷସ ଆୟୋଜନରେ ଲାଗି ପଡିଲେ ।






ଚାଣକ୍ୟ ଗୋଟିଏ ଜାଲ୍ ଚିଠି ଲେଖାଇଲେ । ସତେ ଅବା ରାକ୍ଷସ ଚନ୍ଦ୍ରଗୁପ୍ତଙ୍କ ପାଖକୁ ଗୋପନରେ ଲେଖୁଛନ୍ତି କି ଅତିଶୀଘ୍ର ସେ ମଳୟ-କେତୁଙ୍କୁ ହତ୍ୟା କରି ଚନ୍ଦ୍ରଗୁପ୍ତ ତାଙ୍କ ଉପରେ ନ୍ୟସ୍ତ କରିଥିବା ଦାୟିତ୍ୱ ତୁଲାଇବେ !



ମନ୍ତ୍ରୀ ରାକ୍ଷସ ଯେଉଁ ମୁଦ୍ରା ବା ମୋହର ବ୍ୟବହାର କରୁଥିଲେ, ଚାଣକ୍ୟ କୌଶଳ କରି ସେ ଗୋଟିକ ଚୋରାଇ ଆଣି ନିଜ ପାଖରେ ରଖିଥିଲେ । ଜାଲ୍ ଚିଠିରେ ସେ ମୁଦ୍ରାର ଛାପ ଦେଇ ଜଣେ ଗୁପ୍ତଚର ଦ୍ୱାରା ତାହା ମଲୟକେତୁଙ୍କ ନିକଟକୁ ପଠାଇବାର ଛଳନା କଲେ ।

କିନ୍ତୁ ସେ ଗୁପ୍ତଚର ମଲୟକେତୁଙ୍କ ସୀମାନ୍ତରକ୍ଷୀ ସିପାହୀଙ୍କ ହାବୁଡ଼ରେ ପଡ଼ିଲା । ଅସଲ କଥା ହେଲା, ସେ ଜାଣି ଜାଣି ସେମାନଙ୍କ ହାତରେ ପଡ଼ିଲା । ଚାଣକ୍ୟଙ୍କ ଯୋଜନାର ତାହା ଥିଲା ଅଂଶବିଶେଷ । ସିପାହୀମାନେ ଗୁପ୍ତଚରର ଲୁଗାପଟା ତଲାସ କରି ଚିଠିଟି ପାଇଲେ ।





ସେମାନେ ସେ ଚିଠି ନେଇ ମଲୟକେତୁଙ୍କୁ ଦେଖାଇଲେ । ମଲୟକେତୁଙ୍କ ମନରେ ରାକ୍ଷସଙ୍କ ପ୍ରତି ସଙ୍ଗେ ସଙ୍ଗେ ସନ୍ଦେହ ଆସିଗଲା । ଗୁପ୍ତଚରକୁ ଜେରା କରି ତାଙ୍କର ଧାରଣା ହେଲା ଯେ ତାଙ୍କୁ ଉପରେ ଉପରେ ସମର୍ଥନ କରୁଥିବା କେତେଜଣ ରାଜା ମଧ୍ୟ ରାକ୍ଷସଙ୍କ ପ୍ରଭାବରେ ଭିତରେ ଭିତରେ ଚନ୍ଦ୍ରଗୁପ୍ତଙ୍କୁ ସମର୍ଥନ କରୁଛନ୍ତି ।

ମଲୟକେତୁ ରାକ୍ଷସଙ୍କୁ ଡକାଇ କୈଫିୟତ୍ ମାଗିଲେ । ରାକ୍ଷସ ତାଙ୍କୁ କହିଲେ କି ଏସବୁ ବିଷୟରେ ସେ କିଛି ଜାଣନ୍ତି ନାହିଁ । କିନ୍ତୁ ଚିଠିରେ ରାକ୍ଷସଙ୍କ ମୁଦ୍ରାର ଛାପଥିଲା । ରାକ୍ଷସଙ୍କ କଥାରେ ତେଣୁ ମଲୟକେତୁ ପରତେ ଗଲେ ନାହିଁ । ବିରକ୍ତ ହୋଇ ରାକ୍ଷସ ତାଙ୍କୁ ଛାଡ଼ି ଚାଲିଗଲେ ।





ମଲୟକେତୁ ତାଙ୍କର ଯେଉଁ ମିତ୍ର ରାଜାମାନେ ଚନ୍ଦ୍ରଗୁପ୍ତଙ୍କୁ ସମର୍ଥନ କରୁଥିବାର ସମ୍ବାଦ ପାଇଥିଲେ, ସେମାନଙ୍କୁ ଧରି ଆଣି ହତ୍ୟା କଲେ । ଏହା ଫଳରେ ତାଙ୍କର ସମସ୍ତ ମିତ୍ରରାଜାମାନେ ତାଙ୍କର ଶତ୍ରୁ ହୋଇଗଲେ ଓ ସଢରେ ଚନ୍ଦ୍ରଗୁପ୍ତଙ୍କୁ ସମର୍ଥନ କଲେ ।

ତେଣେ ବିରକ୍ତ ଓ ହତାଶ ରାକ୍ଷସ ପାଟଳିପୁତ୍ର ଆଡେ ଚାଲିଥାନ୍ତି । କାରଣ ସେଠାରେ ତାଙ୍କର ପରିବାର ଥିଲେ । କିନ୍ତୁ ନଗରୀରେ ପ୍ରବେଶ କଲାବେଳେହିଁ ସେ ଦେଖିଲେ, ତାଙ୍କ ପରିବାରକୁ ଆଶ୍ରୟ ଦେଇଥିବା ଚନ୍ଦନଦାସକୁ ରାଜାଙ୍କ ସିପାହୀମାନେ କୁଆଡ଼େ ଧରି ନେଇ ଯାଉଛନ୍ତି ।





ରାକ୍ଷସ ସିପାହୀମାନଙ୍କ ପାଖକୁ ଯାଇ ପଚାରିଲେ, "ଚନ୍ଦନ ଦାସଙ୍କୁ କୁଆଡ଼େ ନେଇ ଯାଉଛ ?" ସିପାହୀମାନେ ଉତ୍ତର ଦେଲେ, "ଇଏ ରାଜଦ୍ରୋହୀ ରାକ୍ଷସଙ୍କ ପରିବାରକୁ ନିଜ ଘରେ ଆଶ୍ରୟ ଦେଇ ଅପରାଧ କରିଛନ୍ତି । ଏହାଙ୍କୁ ବଧ ଭୂମିକୁ ନେଇଯାଉଛୁଁ । ପ୍ରାଣଦଣ୍ଡ ଦିଆଯିବ ।"

ରାକ୍ଷସ କହିଲେ, "ମୁଁ ରାକ୍ଷସ । ମୋ ପରିବାରକୁ ଆଶ୍ରୟ ଦେଇ ଚନ୍ଦନ ଦାସ ମରିବେ କାହିଁକି ? ମୋତେ ମାର ।" ସେତିକିବେଳେ ଚାଣକ୍ୟ ସେଠାରେ ପହଞ୍ଚିଗଲେ ଓ କହିଲେ, "ମହାମନ୍ତ୍ରୀ ରାକ୍ଷସ ! ତମ ବନ୍ଧୁ ଚନ୍ଦନ ଦାସଙ୍କୁ ମୁକ୍ତ କରାଯିବ—ଯଦି ତମେ ଚନ୍ଦ୍ରଗୁପ୍ତଙ୍କ ମନ୍ତ୍ରୀ ହେବ ।"





ଚାଣକ୍ୟ ନିଷ୍କପଟରେ ରାକ୍ଷସଙ୍କୁ କହିଲେ କି ଖାଲି ତାଙ୍କୁ ବଶ କରିବା ନିମନ୍ତେହିଁ ସେ ଚିଠି ଜାଲ କରିଥିଲେ ଓ ଚନ୍ଦ୍ରଗୁପ୍ତଙ୍କ ସହ ଝଗଡ଼ାର ଅଭିନୟ କରିଥିଲେ । ରାକ୍ଷସ ଆଉ କରିବେ କ'ଣ ? ନନ୍ଦ ରାଜା ମରିଛନ୍ତି; ମଳୟକେତୁ ତାଙ୍କୁ ତ୍ୟାଗ କରିଛନ୍ତି । ଅଗତ୍ୟା ସେ ଚାଣକ୍ୟଙ୍କ ପ୍ରସ୍ତାବ ମାନିନେଲେ । ମଗଧରେ ସୁଶାସନ ଓ ଶାନ୍ତି ପ୍ରତିଷ୍ଠା ହେଲା । (ସମାପ୍ତ)




# ଭିନ୍ନ ବିଦ୍ୟା

ଦେବଗିରିରେ ଥିଲେ ଜଣେ ଗୃହସ୍ଥଙ୍କର ଦୁଇ ପୁତ୍ର । ବଡ଼ ପୁଅ ବାପାଙ୍କ ନିର୍ଦ୍ଦେଶରେ ଜମିବାଡ଼ି ଦେଖାଶୁଣା କରିବାରେ ଖୁବ୍ ମନ ଦେଇଥାଏ । କିନ୍ତୁ ସାନ ଭାଇ ସୋମଦେବର ପାଠ ପଢ଼ିବାକୁ ତୀବ୍ର ଇଚ୍ଛା । ବାପା ଓ ବଡ଼ ଭାଇ କହିଲେ କି ସେ ପାଠ ପଢ଼ୁ, କିନ୍ତୁ ଦେବଗିରିରେ ରହି ପଢ଼ୁ । କିନ୍ତୁ ସୋମଦେବର ଜିଦ୍ ସେ ଭୁବନେଶ୍ୱରରେ ଥିବା ବିଖ୍ୟାତ ପଣ୍ଡିତ ପଦ୍ମନାଭ ମିଶ୍ରଙ୍କ ଶିଷ୍ୟତ୍ୱ ଗ୍ରହଣ କରିବ ।

କାଳେ ଏଥିରେ ଘରେ ବାଧା ଦେବେ, ସେଥିପାଇଁ ଦିନେ ସେ କାହାକୁ କିଛି ନ କହି ଭୁବନେଶ୍ୱର ଅଭିମୁଖେ ବାହାରି ପଡ଼ିଲା । ସେ ପୁଣି ବେଶ୍ ଅଭିମାନୀ ପିଲା । କାହାକୁ କିଛି ଖାଇବାକୁ ମାଗେ ନାହିଁ । ଫଳରେ ତୃତୀୟ ଦିନ ସେ ଗୋଟିଏ ଗାଁ ଭିତର ଦେଇ ଯାଉଁ ଯାଉଁ ଚେତା ହରାଇ ପଡ଼ିଗଲା । ପାଖ ଘର ଭିତରୁ ଜଣେ ବୃଦ୍ଧ ଆସି ତା' ମୁହଁରେ ପାଣି ଦେଲେ ଓ ସେ ପ୍ରକୃତିସ୍ଥ ହେବା ଉତ୍ତାରୁ ତାକୁ ନିଜ ଘର ଭିତରକୁ ନେଇଗଲେ ଓ ତାକୁ ଖାଇବାକୁ ପିଇବାକୁ ଦେଲେ ।

ପଣ୍ଡିତ ପଦ୍ମନାଭଙ୍କ ପାଖରେ ପଢ଼ିବା ନିମନ୍ତେ ସେ ଭୁବନେଶ୍ୱର ଯାଉଛି ବୋଲି ଶୁଣି ବୃଦ୍ଧ କହିଲେ, "କିନ୍ତୁ ପଣ୍ଡିତ ପଦ୍ମନାଭ ତ ଆଉ ଭୁବନେଶ୍ୱରରେ ନାହାନ୍ତି! ସେ ତାଙ୍କ ବିଦ୍ୟାଳୟର ଦାୟିତ୍ୱ ଅନ୍ୟମାନଙ୍କୁ ଦେଇ ନିଜ ଗାଁରେ କାଳ କାଟୁଛନ୍ତି ।"

ଏକଥା ଶୁଣି ସୋମଦେବ ପ୍ରାୟ କାନ୍ଦି ପକାଇଲା ।

"ମୁଁ ତେବେ କାହିଁକି ଆଉ ଜୀବନଧାରଣ କରି ରହିବି? ତେଣେ ଘରେ ବାପା ମାଆଙ୍କ ମନରେ ଉତ୍କଣ୍ଠା ସୃଷ୍ଟି କରି ପଳାଇ ଆସିଲି । ଦେଖିବା ବେଳକୁ ପଣ୍ଡିତ ପଦ୍ମନାଭଙ୍କ ଶିଷ୍ୟ

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



ଗ୍ରହଣ କରିବାର ଯୋଗ ମୋ ଭାଗ୍ୟରେ ନାହିଁ । କୁଆଡ଼େ ଯିବି? ମୁଁ ବରଂ ସେମିତି ରାସ୍ତାରେ ପଡି ମରି ଯାଇଥାନ୍ତି । ହେ ମହାଭାଗ! ଆପଣ କାହିଁକି ମୋତେ ପ୍ରାଣଦାନ ଦେଲେ?" ସେ କହିଲା ।

ବୃଦ୍ଧ ସେଉଠୁ ହସି ନିଜ ପରିଚୟ ଦେଲେ । ସେ ହେଲେ ପଣ୍ଡିତ ପଦ୍ମନାଭ । ସୋମଦେବର ଆଗ୍ରହରେ ସେ ଏତେ ମୁଗ୍ଧ ହୋଇଥାନ୍ତି ଯେ ସେ ତାକୁ ନିଜ ଘରେ ରଖି ଶିକ୍ଷା ଦେବାକୁ ରାଜି ହେଲେ ।.

ସୋମଦେବର ଆନନ୍ଦ କହିଲେ ନ ସରେ । ସେ ଗଭୀର ମନ ଧ୍ୟାନ ଦେଇ ପଢିଲା ଓ ପାଞ୍ଚବର୍ଷର ବିଦ୍ୟା ତିନିବର୍ଷରେ ଅଧ୍ୟୟନ କଲା ।

ପଣ୍ଡିତ ପଦ୍ମନାଭ ପିଲାଟିର ପ୍ରତିଭା ଦେଖି ମୁଗ୍ଧ ହେଲେ ଓ ତାକୁ ମନେ ମନେ ବହୁତ ଆଶୀର୍ବାଦ କଲେ ।

ଦିନେ ପଣ୍ଡିତ ପଦ୍ମନାଭ ତାକୁ କହିଲେ, "ବାପା! ତୋର ଶାସ୍ତ୍ରଜ୍ଞାନ ସମ୍ପୂର୍ଣ୍ଣ ହେଲା । କିନ୍ତୁ ମୁଁ ଚାହେଁ ତୁ ଭିନ୍ନ ବିଦ୍ୟା ମଧ୍ୟ ହାସଲ କର । ତା'ହେଲେ ତୁ ରାଜଦରବାରରେ ମନ୍ତ୍ରୀ ପଦ ପାଇବାର ଯୋଗ୍ୟ ହେବୁ ।"

"ଗୁରୁଦେବ! ଭିନ୍ନ ବିଦ୍ୟା କ'ଣ? ଆପଣ ମୋତେ ଯାହା ଶିଖାଇବେ, ତାହା ଶିଖିବି ।" ସୋମଦେବ କହିଲା ।

"ବତ୍ସ! ସେ ବିଦ୍ୟା ମୁଁ ଶିଖାଇପାରିବି ନାହିଁ । ତୋତେ ବଣ ଭିତରେ ଯାଇ ଜଣେ ଭିଲ୍ ସର୍ଦ୍ଦାରଠାରୁ ସେସବୁ ଶିଖିବାକୁ ହେବ । ତାହା ଚୋର ବିଦ୍ୟା ।" ପଣ୍ଡିତ କହିଲେ ।

ସୋମଦେବ ଚମକିପଡି ପଚାରିଲା, "ଚୋର ବିଦ୍ୟା ମୁଁ ଶିଖିବି କାହିଁକି?"

ପଣ୍ଡିତ ପଦ୍ମନାଭ ହସିଲେ ଓ କହିଲେ, "ଚୋରି କରିବା ପାଇଁ ନୁହେଁ, ଚୋର ଧରିବା ପାଇଁ । ମୋର ଇଚ୍ଛା, ତୁ ରାଜାଙ୍କର ପରାମର୍ଶଦାତା ବା ମନ୍ତ୍ରୀ ହେବୁ । ସେପାଇଁ କେବଳ ଶାସ୍ତ୍ର ଜ୍ଞାନ ନୁହେଁ, ବାସ୍ତବ ଓ ବ୍ୟାବହାରିକ ଜ୍ଞାନ ଲୋଡ଼ା ।" ପଦ୍ମନାଭ ଏହା କହି ତା' ମୁଣ୍ଡରେ ହାତ ରଖିଲେ ।

ସୋମଦେବ ଆଉ କିଛି ନକହି ଗୁରୁଙ୍କ ନିର୍ଦ୍ଦେଶ ଅନୁଯାୟୀ ଭିଲ୍ ସର୍ଦ୍ଦାର ପାଖରେ



ବର୍ଷେ ରହି ଯାହା ଶିଖିବାର ଶିଖିଲା ଓ ତା'ପରେ ରାଜଧାନୀ ଅଭିମୁଖେ ଚାଲିଲା । ରାଜଧାନୀ ପାଖ ହୋଇ ଆସିଲା । ତାକୁ ଶୋଷ ଲାଗିବାରୁ ସେ ଜଣେ ବ୍ରାହ୍ମଣଙ୍କ ଘରେ ପହଞ୍ଚି ପିଇବା ପାଇଁ ପାଣି ମାଗିଲା । ବ୍ରାହ୍ମଣ ତାକୁ ପାଣି ଦେବା ଅବସରରେ ଲକ୍ଷ୍ୟ କଲେ ଓ ବୁଝିଲେ ସେ ଜଣେ ମାର୍ଜିତ, ଶିକ୍ଷିତ ଯୁବକ । ତାକୁ ପଚାରି ସେ ତା' ବିଦ୍ୟାର୍ଜନ ବିଷୟରେ ସବୁ ଜାଣିଲେ ଓ କହିଲେ, "ବାବୁ, ତମେ ତ ଜ୍ଞାନୀ, କିନ୍ତୁ ଚତୁର କି ନାହିଁ ମୁଁ ଜାଣିବାକୁ ଚାହେଁ । ଆଚ୍ଛା କହିଲେ ଦେଖି, ତମେ ଆସିବା ପୂର୍ବରୁ ଆମ ଘରକୁ କିଏ ଆସିଥିଲେ ?"

ସୋମଦେବ ଥରେ ପଦାକୁ ଯାଇ ଫେରି ଆସି କହିଲା, "ଚାରିଜଣ ରାଜାଙ୍କ ପ୍ରହରୀ ଆସିଥିଲେ ।"

"ବାଃ, ତମେ କିପରି ଜାଣିଲ ?" ବ୍ରାହ୍ମଣ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ବାହାରେ ଚାରିହଳ ପଦଚିହ୍ନ ଅଛି । ସେସବୁ ସମାନ ଭାବରେ ପଡିଛି । ରାଜ-ପ୍ରହରୀମାନେ ଏକ ତାଳରେ ଗତି କରନ୍ତି । ସେସବୁ ପଦଚିହ୍ନରୁ ବୁଝିହେଲା ଆଗନ୍ତୁକମାନେ କିଏ ।" ସୋମଦେବ କହିଲା ।

"ବାଃ, ବାଃ । ଆଚ୍ଛା ବାବୁ, ଗୋଟାଏ କଥା । ଆଜି ରାଣୀ ମନ୍ଦିରକୁ ଆସିଥିଲେ । ତାଙ୍କ ହାତରୁ ଖଣ୍ଡିଏ ହୀରା ଖସି ପଡିଲା । ରାଣୀ ଉଆସରେ ପହଞ୍ଚି ସେକଥା ବୁଝି ତାହା ଖୋଜିବାକୁ ଲୋକ ପଠାଇଲେ; କିନ୍ତୁ ସେତେବେଳକୁ କିଏ ହୀରା ଉଠାଇନେଇ ଗଲାଣି । ତମେ ଏ ବିଷୟରେ କିଛି କହିପାରିବ ?" ବ୍ରାହ୍ମଣ ପଚାରିଲେ ।

"ଅପେକ୍ଷା କରନ୍ତୁ ।" ଏହା କହି ସୋମଦେବ ବାହାରିଗଲା । ସେ ମନ୍ଦିରର ସ୍ଥିତି ଲକ୍ଷ୍ୟ କଲା ଓ ତା'ପରେ ରାସ୍ତାରେ କିଛି ପଡିଥିବାର ଲକ୍ଷ୍ୟ କରି ଜଣେ ସୁନାରି ଘର ପର୍ଯ୍ୟନ୍ତ ଗଲା । ଭିତରକୁ ଯାଇ ସୁନା ଭାଉ କ'ଣ ଥରେ ପଚାରିଦେଇ ଲେଉଟି ଆସି ବ୍ରାହ୍ମଣଙ୍କୁ କହିଲା, "ଗାଁ ମୁଣ୍ଡରେ ଥିବା ସୁନାରି ଘର ତଲାସ କରନ୍ତୁ । ମିଳିଯିବାର ସମ୍ଭାବନା ଅଛି ।"

"କନ୍ତୁ ସୁନାରୀ ଘର ତଲାସ ସରିଛି ।" ବ୍ରାହ୍ମଣ କହିଲେ ।

"ସରି ନାହିଁ । ତଲାସ ବେଳେ ମୁଁ ନିଜେ ରହିବି ।" ସୋମଦେବ କହିଲା । ବ୍ରାହ୍ମଣ ପ୍ରହରୀମାନଙ୍କୁ ଖବର ଦେଲା । ସେମାନେ ଆସି ସୋମଦେବ ନେତୃତ୍ୱରେ ସୁନାରୀ ଘରକୁ ଗଲେ । ସୋମଦେବ ଗୋଟିଏ କୋଇଲା ଝୁଡି ଭିତରୁ ହୀରା ବାହାର କରିଦେଲା !

ଏ ସମ୍ବାଦ ପାଇ ରାଜା ସୋମଦେବକୁ ଡକାଇ ସେ କପରି ଚୋରକୁ ଧରିଲା ସେକଥା ପଚାରିଲେ । ସୋମଦେବ ଉତ୍ତର ଦେଲା, "ମହାରାଜ, ଏଥିରେ କିଛି ଯୋଗାଯୋଗ ରହିଛି । ମୁଁ ପଣ୍ଡିତଙ୍କ ଘରକୁ ଆସିବା ବେଳେ ମନ୍ଦିର ପାଖରେ ଟିକିଏ ବିଶ୍ରାମ କରିଥିଲି । ସେତିକିବେଳେ ଜଣେ ଲୋକ କୋଇଲା ଦୋକାନୀକୁ ଥଟ୍ଟାରେ ପଚାରିବାର ଶୁଣିଲି: 'ତମ କୋଇଲାରେ କି ସୁନା ଅଛି ଯେ ସୁନାରୀ ନିଜେ ହଠାତ୍ କୋଇଲା କିଣି ପକାଇଲେ ? ତାଙ୍କୁ ତ ମୁଁ କେବେ କୋଇଲା ବୋଝ ନେଇ ଯିବାର ଦେଖି ନଥିଲି !' ମୁଁ ଏହା ଶୁଣି କୌତୁହଳୀ ହୋଇଥିଲି । ଯେତେବେଳେ ବ୍ରାହ୍ମଣଙ୍କଠୁଁ ମନ୍ଦିର ପାଖରୁ ହୀରା ଉଭାନ୍ ହୋଇଯିବା କଥା ଶୁଣିଲି, ମୋର ସନ୍ଦେହ ହେଲା । ବାଟରେ କୋଇଲା ଗୁଣ୍ଡ ପଡିଥାଏ । ତାକୁ ଲକ୍ଷ୍ୟ କରି ସୁନାରୀ ଘରଯାଏ ଗଲି । ତାକୁ ଭେଟିଲି । ଚୋରି ନ କରିବା ଲୋକ ଚୋର କଲେ ତା' ମୁହଁରେ ଗୋଟାଏ ଆଶଙ୍କା ଭାବ ଥାଏ । ସୁନାରୀ ମୁହଁରେ ମୁଁ ସେ ଭାବ ଲକ୍ଷ୍ୟ କଲି । ସେ ଯେ ସନ୍ଦେହ ମୁକ୍ତ ରହିବା ପାଇଁ କୋଇଲା କିଣି ସେଥିରେ ହୀରା ଲୁଚାଇ ନେଇ ଆସିଥିଲା, ସେକଥା ବୁଝି ପାରିଲି ।"

ସୁନାରୀ ଏସବୁ ସ୍ୱୀକାର କଲା । ରାଜା ସୋମଦେବଠୁଁ ତା' ଶିକ୍ଷାଦୀକ୍ଷା କଥା ସବୁ ଶୁଣିଲେ । ଏହା ଭିତରେ ପଣ୍ଡିତ ପଦ୍ମନାଭ ମଧ୍ୟ ରାଜାଙ୍କୁ ସୋମଦେବ ବିଷୟରେ ଚିଠି ଲେଖିଥାନ୍ତି । ସୋମଦେବ ମନ୍ତ୍ରୀ ପଦ ପାଇଲା ।






କଂସ ବଧ ସମ୍ବାଦ ପାଇ ତା'ର ରାଣୀମାନେ କାନ୍ଦି କାନ୍ଦି ସେଠାରେ ଆସି ପହଞ୍ଚିଲେ । କଂସର ଶବ ଉପରେ ମୁଣ୍ଡ କୋଡ଼ି କୋଡ଼ି ସେମାନେ କାନ୍ଦିଲେ, ସେମାନେ କେବେ କଳ୍ପନା ସୁଦ୍ଧା କରି ନଥିଲେ ଯେ ମହା ପରାକ୍ରମୀ କଂସକୁ କେହି ବି ମାରିପାରେ । ମୃତ୍ୟୁ ହେଲା, ପୁଣି ଏତେ ସହଜରେ ଜଣେ ବାଳକ ହାତରେ !

କଂସର ମା' ମଧ୍ୟ ବୋହୂମାନଙ୍କର ସଦ୍ୟ-ବୈଧବ୍ୟ ରୂପ ଦେଖି ବହୁତ କାନ୍ଦିଲେ । ସେ ସ୍ୱାମୀ ଉଗ୍ରସେନଙ୍କୁ କହିଲେ, "ତମେ କ'ଣ ମୃତ ପୁଅକୁ ଦେଖିନାହଁ ? ଏଡ଼େବଡ଼ ପରାକ୍ରମ-ଶାଳୀ ପ୍ରବଳ ପ୍ରତାପୀ କଂସ ଧୂଳିଧୂସରିତ ହୋଇ କିପରି ଏକ ଦୟନୀୟ ଅବସ୍ଥାରେ ପଡ଼ିଛି । ତମେ କ'ଣ ଦେଖିପାରୁ ନାହଁକି ? ଏବେ କୃଷ୍ଣହିଁ ଏ ଦେଶର ରାଜା । ତା'ର ଅନୁମତି ନେଇ ତମେ କଂସର ମୃତ ଦେହକୁ ଉତ୍ତମ ରୂପ ସଂସ୍କାର କର, ଅର୍ଥାତ୍ ଭଲଭାବରେ ତା'ର ଅନ୍ତ୍ୟେଷ୍ଟି କ୍ରିୟାର ବନ୍ଦୋବସ୍ତ କର ।"

ମଥୁରାର ଯେଉଁ ସମ୍ଭ୍ରାନ୍ତ ଲୋକେ ସେଦିନ କଂସର ପ୍ରାସାଦରେ ଉପସ୍ଥିତ ରହି ସବୁକଥା ନିଜ ଆଖିରେ ଦେଖିଲେ ସେମାନଙ୍କ ମନରେ ଅବଶ୍ୟ କୃଷ୍ଣଙ୍କ ଅସାଧାରଣ ଶକ୍ତି ବିଷୟରେ ତଥା କଂସର ମୃତ୍ୟୁ ବିଷୟରେ କୌଣସି ସନ୍ଦେହ ନଥିଲା । କିନ୍ତୁ ମଥୁରାର ଜନସାଧାରଣ ସହଜରେ ଏକଥା ବିଶ୍ୱାସ କରିପାରିଲେ ନାହିଁ । ଯେଉଁ କଂସ ଭୟରେ ସେମାନେ ବାଟରେ ମୁଣ୍ଡ ଟେକି ଚାଲିପାରୁ ନଥିଲେ, ଯାହା ବିରୁଦ୍ଧରେ ପଦେ କହିବା ଅର୍ଥ ପ୍ରାଣ ଦେବା, ଯାହାକୁ

୧୨. ବଳରାମ କୃଷ୍ଣଙ୍କ ବିଦ୍ୟାଭ୍ୟାସ



ଆଖପାଖର ସବୁ ରାଜା ଓ ସାମନ୍ତମାନେ ଭୟ କରୁଥିଲେ, ସେ କଂସ ଜଣେ ବାଳକ ହାତରେ ପ୍ରାଣ ଦେଇଛି ଏହା କ'ଣ ବିଶ୍ୱାସ କରିବା ସହଜ ? ଯାହାହେଉ କ୍ରମେ ଏକଥା ପ୍ରଚାର ହୋଇଗଲା ଓ ସମସ୍ତେ ପ୍ରଥମେ ସ୍ତବ୍ଧ ରହି ତା'ପରେ ଏହାକୁ ବିଶ୍ୱାସ କଲେ । କ୍ରମେ ବାତାବରଣରେ ଗୋଟିଏ ଆନନ୍ଦର ଲହରି ଖେଳିଗଲା ।

ସେଦିନ ସନ୍ଧ୍ୟା ହେବା ପରେ ମନେହେଲା ଯେପରି ସୂର୍ଯ୍ୟ କଂସ ବଧର ବାର୍ତ୍ତା ନେଇହିଁ ପଶ୍ଚିମ ଅସ୍ତାଚଳରେ ବୁଡ଼ି ଯିବାର ସଂକଳ୍ପରେ ଥିଲେ । ସେଦିନର ସୂର୍ଯ୍ୟାସ୍ତ ସହିତ କଂସର ସମସ୍ତ ଗର୍ବ, ଗୌରବ ଅସ୍ତମିତ ହେଲା । ସାରା ମଥୁରା ବିଭିନ୍ନ ବ୍ୟକ୍ତିଙ୍କ ଦ୍ୱାରା ଭିନ୍ନ ଭିନ୍ନ ଆଲୋଚନାରେ ମୁଖରିତ । ଶ୍ରୀକୃଷ୍ଣ ସମସ୍ତିଙ୍କୁ ଡାକି କହିଲେ, "ମୁଁ ଅତ୍ୟନ୍ତ ବାଲ୍ୟସୁଲଭ ଭାବନାରେ ବଶୀଭୂତ ହୋଇ ଯାହା କଲି, ତଦ୍ୱାରା କେତେ ସ୍ତ୍ରୀଲୋକ ବିଧବା ହେଲେ, ସେଥିପାଇଁ ମୁଁ ଦୁଃଖିତ । କିନ୍ତୁ କଂସକୁ ବଧ କରିବା ଛଡ଼ା ଆଉ ଉପାୟ ନଥିଲା । କେତେ ସାଧୁସନ୍ଥଙ୍କ ଉପରେ ସେ ଘୋର ଅତ୍ୟାଚାର କରିଛି । ନିଜ ପିତାଙ୍କୁ କାରାଗାରରେ ରଖି ନିଜେ ରାଜା ହେବା କେତେବଡ଼ ଅନ୍ୟାୟ । ତା'ର ନିଷ୍ଠୁରତାର ସୀମା ନଥିଲା । ମୋର ନିଷ୍ପାପ ପିତାମାତାଙ୍କୁ ସେ କାରାଗାରରେ ରଖି କେତେ କଷ୍ଟ ବା ନ ଦେଇଛି, ଏପରି ପାପୀକୁ ଦୟା ଦେଖାଇବାହିଁ ପାପ । ତେଣୁ ଜଗତର କଲ୍ୟାଣ ପାଇଁ ମୁଁ ଦୁରାଚାରୀ କଂସକୁ ନିଧନ କରିଛି ।"

ସେହି ସମୟରେ ବୃଦ୍ଧ ଯାଦବ ଉଗ୍ରସେନ ଅନ୍ୟ କେତେକ ଯାଦବଙ୍କ ସହ ସେଠାରେ ପହଞ୍ଚି କହିଲେ, "ବତ୍ସ କୃଷ୍ଣ, ତମେ ଆଜି କଂସ ଭଳି ଭୟଙ୍କର ପାପୀକୁ ବିନାଶ କରି ଅକ୍ଷୟ ଯଶର ଅଧିକାରୀ ହୋଇଛ । ଏବେ ପ୍ରଜାଗଣ ତା'ର ଅତ୍ୟାଚାରରୁ ମୁକ୍ତ । ତମେ ଏ ରାଜ୍ୟର ରାଜା ହୋଇ ରାଜ୍ୟ ଶାସନ କର । କଂସ ଥିଲା ଅପରାଜେୟ । ତୁମର ଦୈବୀଶକ୍ତି ଦ୍ୱାରା ସେ ପରାଜିତ ହୋଇଛି । ଏବେ ଅନୁମତି ଦେଲେ ମୁଁ ମୋର ସ୍ତ୍ରୀ, ବନ୍ଧୁଗଣ ଓ ଅନ୍ୟାନ୍ୟ

ଯାଦବମାନେ ମିଶି କଂସର ଅନ୍ତ୍ୟେଷ୍ଟି କ୍ରିୟା ସମାପନ କରନ୍ତୁ ।"

"ଏସବୁ କାର୍ଯ୍ୟ ପାଇଁ ମୁଁ କ'ଣ ଅନୁମତି ଦେବ ?" କୃଷ୍ଣ ହସି ହସି କହିଲେ, "କଂସ ବଧ କରିବା ପରେ ଆପଣମାନେ ଯେ କହୁଛନ୍ତି ମୁଁ ରାଜା ହେବି, ସେକଥା ଆଦୌ ସମ୍ଭବ ନୁହେଁ । ମୁଁ ପାପୀ କଂସକୁ ସଂହାର କରିଛି ପ୍ରଜା-ମାନଙ୍କର ହିତ ପାଇଁ, ପୃଥିବୀର ହିତ ପାଇଁ । ମୁଁ ତ ଏବେ ପୁଣି ଯାଇ ଗୋପାଳମାନଙ୍କ ସହିତ ମିଶି ନାଚ କରିବି, ଗୀତ ଗାଇବି, ଖେଳିବି । ହେ ଆର୍ଯ୍ୟଶ୍ରେଷ୍ଠ ଉଗ୍ରସେନ, ମୋର ପ୍ରିୟ ପିତାମହ, ମୁଁ ଆପଣଙ୍କୁହିଁ ଏହି ରାଜ୍ୟ ପ୍ରଦାନ କରୁଛି । ସେ ରାଜ୍ୟ ଆପଣଙ୍କର ଥିଲା, ଏବେ ଆପଣଙ୍କରହିଁ ରହିବ । ମୋର ସେଥିରେ କୌଣସି ଅଧିକାର ମୁଁ ସାବ୍ୟସ୍ତ କରୁନାହିଁ । ଆପଣ ଅତି ଆନନ୍ଦରେ ପ୍ରଜାମାନଙ୍କୁ ପାଳନ କରନ୍ତୁ ।"

ତା'ପରେ କୃଷ୍ଣ ଓ ବଳରାମ ମିଶି ଉଗ୍ରସେନଙ୍କର ଅଭିଷେକ କଲେ । ଉଗ୍ରସେନଙ୍କର ଆନନ୍ଦ କହିଲେ ନ ସରେ । ସେ ନାତି ଦୁହିଁଙ୍କୁ ପାଇ ଆନନ୍ଦରେ ଗଦ୍ ଗଦ୍ ହେଉଥା'ନ୍ତି । ଉଗ୍ରସେନଙ୍କ ତରଫରୁ କୃଷ୍ଣ ବଳରାମ ମଥୁରା ନଗରୀର ରାସ୍ତା, ଘାଟ ଇତ୍ୟାଦି ସୁନ୍ଦର କରି ତିଆରି କଲେ । ରାଜ୍ୟଶାସନରେ ମଧ୍ୟ ପ୍ରଜାଙ୍କର ହିତ ପାଇଁ ନାନା ପ୍ରକାର ସୁବ୍ୟବସ୍ଥା ସବୁ କରିଦେଲେ । କୃଷ୍ଣ ବଳରାମଙ୍କୁ ପାଇ ମଥୁରାବାସୀ ଧନ୍ୟ ହେଲେ ।



ଅନେକ ବର୍ଷ ପରେ ମଥୁରାରେ ସ୍ୱାଭାବିକ ଜୀବନ ଧାରା ଫେରି ଆସିଲା । ଉଗ୍ରସେନ ଥିଲେ ଅତ୍ୟନ୍ତ ଦୟାବାନ ଓ ନ୍ୟାୟପରାୟଣ ରାଜା । କଂସ-ରାଜୁତି କାଳର ବିଭୀଷିକା ପରେ ପୁଣି ଉଗ୍ରସେନଙ୍କ ଶାସନର ସୁଫଳ ଲାଭ କରି ମଥୁରାବାସୀମାନେ ନିଜ ନିଜକୁ ଧନ୍ୟ ମନେ କଲେ । ସେମାନେ ନିର୍ଭୟରେ ସୁଖଶାନ୍ତିରେ କାଳ ଯାପନ କଲେ ।

କିଛିଦିନ ପରେ ଦିନେ କୃଷ୍ଣ ବଳରାମଙ୍କୁ କହିଲେ, "ଭାଇ, ଆମେ ତ ଗାଈ ଜଗି ଖେଳବୁଲି ସବୁ ସମୟ କଟାଇ ଦେଲେ । ରାଜପୁତ୍ର ଭାବରେ ଆମକୁ ଏଣିକି ଅବସ୍ଥାନ କରିବାକୁ ପଡ଼ିବ । ତେଣୁ କିଛି ବିଦ୍ୟାଶିକ୍ଷା



ମଧ୍ୟ କରିବାକୁ ହେବ । କିନ୍ତୁ ଆମର ବିଦ୍ୟାଗୁରୁ କିଏ ହେବେ ?"

ବଳରାମ ମଧ୍ୟ କୃଷ୍ଣଙ୍କ କଥାକୁ ଶୁଣି ଗଭୀର ଭାବରେ ଚିନ୍ତା କଲେ । ପରେ ସେମାନେ ନିଜର ଗୁରୁଜନମାନଙ୍କୁ ଏକଥା କହିଲେ । ସେତେବେଳେ ବିଦ୍ୟାଗୁରୁ ଭାବରେ ଖୁବ୍ ଖ୍ୟାତି ଲାଭ କରିଥା'ନ୍ତି ଅବନ୍ତୀପୁର ନିବାସୀ ମୁନି ସନ୍ଦୀପନ । ପିତାମାତାଙ୍କର ପରାମର୍ଶ କ୍ରମେ ସେମାନେ ସନ୍ଦୀପନ ମୁନିଙ୍କ ନିକଟକୁ ବିଦ୍ୟାଶିକ୍ଷା କରିବାକୁ ଗଲେ ।

ସନ୍ଦୀପନ ମୁନି ଆଗରୁ ନିଜ ଧ୍ୟାନ ବଳରେ ଜାଣିପାରିଥା'ନ୍ତି ଯେ କୃଷ୍ଣ ବଳରାମ ତାଙ୍କ ପାଖକୁ ବିଦ୍ୟାଶିକ୍ଷା କରିବାକୁ ଆସୁଛନ୍ତି । ତେଣୁ ବହୁ ପୂର୍ବରୁ ସେ ପ୍ରସ୍ତୁତ ଥିଲେ । ଦୁହିଁଙ୍କୁ ଅତି ଆଦରରେ ସହିତ ଅଭ୍ୟର୍ଥନା କରି ନେଇଗଲେ ।

ତା'ପରେ ଆରମ୍ଭ ହେଲା ବିଦ୍ୟାଶିକ୍ଷା । ଚଉଷଠି ଦିନରେ ସେମାନେ ସ୍ବରବେଦ ଶିଖିଗଲେ ଓ ବାରଦିନ ମଧ୍ୟରେ, ଧର୍ମଶାସ୍ତ୍ର, ତର୍କ, ନ୍ୟାୟ ଶାସ୍ତ୍ର, ଗଣିତ, ସଙ୍ଗୀତ ଓ ସୈନିକ ବିଦ୍ୟା ଶିଖିଗଲେ । ତା'ପରେ ପଚାଶ ଦିନ ମଧ୍ୟରେ ସେମାନେ ଅସ୍ତ୍ରଶସ୍ତ୍ର ଶିକ୍ଷା ଭଲଭାବରେ କଲେ । ସେମାନଙ୍କର ଅଧ୍ୟୟନ ଶକ୍ତି ଦେଖି ଗୁରୁ ଅତ୍ୟନ୍ତ ବିସ୍ମିତ ହେଲେ ।

ଦୁଇ ରାଜପୁତ୍ର ସାଇ ସାଧାରଣ ବିଦ୍ୟାର୍ଥୀଙ୍କ ସହ ଗୁରୁଙ୍କ ଆଶ୍ରମରେ ରହିଲେ । ନିଜ ନିଜର ଅମାୟିକ ଓ ବାଳକ-ସୁଲଭ ବ୍ୟବହାର ଦ୍ୱାରା ସେମାନେ ଅନ୍ୟମାନଙ୍କ ସହ ଏପରି ଅନ୍ତରଙ୍ଗ ଭାବରେ ମିଶି ପାରୁଥିଲେ ଯେ ସେମାନେ ରାଜପୁତ୍ର ବୋଲି ସହପାଠୀମାନେ ମନେ ରଖୁ ନଥିଲେ ! ସମସ୍ତଙ୍କ ଭଳି ସେମାନେ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ଗୁରୁଙ୍କ ନିର୍ଦ୍ଦେଶରେ ଆଶ୍ରମ ନିମନ୍ତେ ପ୍ରୟୋଜନୀୟ କାମଦାମରେ ମନୋନିବେଶ କରୁଥିଲେ ।

ଅଧ୍ୟୟନ ଶେଷ ହୁଅନ୍ତେ ଦୁଇ ରାଜପୁତ୍ର ଗୁରୁଙ୍କୁ ଭକ୍ତିପୂର୍ବକ ପ୍ରଣାମ କରି କହିଲେ, "ଗୁରୁଦେବ, ଆପଣଙ୍କ କୃପାରୁ ଆମେମାନେ ଅନାୟାସରେ ସମସ୍ତ ବିଦ୍ୟାରେ ପାରଙ୍ଗମ ହୋଇପାରିଛୁ । ଜନ୍ମିତ ପିତା ପରି ସ୍ନେହ



ଆଦରରେ ଆମକୁ ଆପଣ ରଖିଥିଲେ । ଏବେ କୁହନ୍ତୁ ଆପଣଙ୍କୁ ଆମେମାନେ କି ଗୁରୁଦକ୍ଷିଣା ଦେବୁ ?"

ଗୁରୁ ଟିକିଏ ସଙ୍କୋଚ କରି କହିଲେ, "ବତ୍ସ, ତୁମମାନଙ୍କୁ ଶିଷ୍ୟକରି ପାଇ ମୁଁ ଆଜି ଧନ୍ୟ ହୋଇଛି । ପ୍ରଭୁଙ୍କ କୃପାରୁ ମୋର ଅପୂର୍ଣ୍ଣ କିଛି ନାହିଁ । ଗୋଟିଏ ଦୁଃଖର ସ୍ମୃତି ଏବେ ବି ମୋ ମନକୁ ଅଥୟ କରେ । ମୋର ଏକମାତ୍ର ପୁତ୍ର ସମୁଦ୍ର ସ୍ନାନ କରିବାବେଳେ ତିମିଟିଏ ତାକୁ ଖାଇ ପକାଇଲା । ସେ ପୁତ୍ରକୁ କ'ଣ ମୁଁ ଆଉ ଫେରି ପାଇପାରିବି ?" ଗୁରୁ ଜାଣିଥିଲେ ଶ୍ରୀକୃଷ୍ଣ ଥିଲେ ସ୍ୱୟଂ ଭଗବାନ୍, ସେ ସବୁ କିଛି କରିପାରିବେ ।

ଅଳ୍ପ ହସି କୃଷ୍ଣ କହିଲେ, "ଆପଣଙ୍କ ଦୁଃଖର ଯେପରି ଅବସାନ ହୁଏ ମୁଁ ସେଥିପାଇଁ ସବୁ ପ୍ରକାର କାର୍ଯ୍ୟପନ୍ଥା ଗ୍ରହଣ କରିବି ।"

ଗୁରୁ ଓ ବଳରାମଙ୍କଠାରୁ ବିଦାୟ ନେଇ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ କୃଷ୍ଣ ଯାଇ ସମୁଦ୍ର ତୀରରେ ପହଞ୍ଚିଲେ । ସମୁଦ୍ରକୁ ଡାକି ଆଦେଶ ଦେଲେ, "ମୁଁ ଶୁଣିଛି ମୋର ଗୁରୁ ସନ୍ଦୀପନଙ୍କ ପୁତ୍ରକୁ ଏଠାରେ ସମୁଦ୍ର ଭିତରେ ତିମି ଖାଇ-ଯାଇଛି । ଏବେ ମୋତେ ଦେଖାଅ କିଏ ସେହି ଦୁଷ୍ଟ ଜନ୍ତୁ ।"

ସମୁଦ୍ର ଦେବତା ହାତଯୋଡ଼ି କହିଲେ, "ପ୍ରଭୁ, ପଞ୍ଚଜନ ନାମକ ରାକ୍ଷସ ତିମି ରୂପରେ ବୁଲି ବୁଲି ଆପଣଙ୍କ ଗୁରୁପୁତ୍ରକୁ ଖାଇଛି । ଏବେ ଆପଣଙ୍କ ନିକଟକୁ ତାକୁ ଡାକି ଆଣୁଛି ।"

ପରକ୍ଷଣରେହିଁ ବିକଟକାୟ ତିମି ଆସି ପହଞ୍ଚିଲା । ଶ୍ରୀକୃଷ୍ଣଙ୍କର ସେହି ରୁଦ୍ରରୂପ ଦେଖି ସେ କହିଲା, "ପ୍ରଭୁ, ମୁଁ ପ୍ରାଣୀମାତ୍ର, ଆହାର ଯାହା ପାଏ ଖାଇ ବଞ୍ଚେ । ମୁଁ କି ଜାଣେ ମୋର ଖାଦ୍ୟ ଆପଣଙ୍କର ଗୁରୁପୁତ୍ରହିଁ ଥିଲା, ଆପଣ ଏବେ ଯମପୁରକୁ ଯାଇ ତାକୁ ଫେରାଇ ଆଣନ୍ତୁ ।" ଏତିକି କହି ସେ କୃଷ୍ଣଙ୍କୁ ପାଞ୍ଚଟି ସ୍ୱର ଉତ୍ପନ୍ନ କରୁଥିବା ଏକ ବିରାଟ ଶଙ୍ଖ ଉପହାର ଦେଲା । କୃଷ୍ଣ ସେହିଦିନଠାରୁ ସେଇଟି ହାତରେ ଧାରଣ କରିଥାନ୍ତି । ସେହି ରାକ୍ଷସର ନାମ ଅନୁସାରେ ଶଙ୍ଖଟିର ନାମ "ପାଞ୍ଚଜନ୍ୟ" ।

କୃଷ୍ଣ ରାକ୍ଷସର ନମ୍ରତା ଓ ସତ୍ୟପରାୟଣତା ଦେଖି ତା' ଉପରୁ କ୍ରୋଧ ସମ୍ବରଣ କଲେ ଓ ତାକୁ କୌଣସି ଦଣ୍ଡ ଦେଲେ ନାହିଁ ।

ତା'ପରେ କୃଷ୍ଣ ଯାଇ ପହଞ୍ଚିଲେ ଯମ ପୁରରେ । କୃଷ୍ଣଙ୍କର ଏ ରୂପ ଦେଖି ଭୀତତ୍ରସ୍ତ ହୋଇ ଯମରାଜ କହିଲେ, "ପ୍ରଭୁ, ଆପଣ ଯେଉଁଥିପାଇଁ ଏଠାକୁ ଆସିଛନ୍ତି ମୁଁ ଜାଣେ । ପ୍ରତ୍ୟେକ ଜୀବର ଆୟୁ ଶେଷ ହେଲେ ତାକୁ ଏଠାକୁ ମୃତ୍ୟୁ ନେଇ ଆସେ । ଏଥିରେ ଆମର କିଛି ଦୋଷ ନାହିଁ ।"



ମୃତ୍ୟୁକୁ ଡାକି କୃଷ୍ଣ ଆଦେଶ ଦେଲେ ଗୁରୁ-ପୁତ୍ରକୁ ଫେରାଇ ଦେବାପାଇଁ । ତାହାହିଁ ହେଲା । ଗୁରୁପୁତ୍ରକୁ ନେଇ ଶ୍ରୀକୃଷ୍ଣ ଫେରି ଆସିଲେ ଓ ଗୁରୁଙ୍କୁ ଅର୍ପଣ କଲେ ଗୁରୁଦକ୍ଷିଣା ସ୍ୱରୂପ ।

ଏହିପରି ଭାବରେ ସେଦିନ କୃଷ୍ଣଙ୍କ କୃପାରୁ ଜଣେ ବାଳକ ମୃତ୍ୟୁ ଉପରେ ବିଜୟ ଲାଭ କଲା ।

ମୃତ ପୁତ୍ର ଜୀବିତ ହୋଇ ଫେରି ଆସିଛି । ଗୁରୁଙ୍କର ଆନନ୍ଦର ସୀମା ନାହିଁ । ସ୍ନେହ ଓ କୃତଜ୍ଞତାରେ ଗଦ୍ ଗଦ୍ ହୋଇ ସେ ଶ୍ରୀକୃଷ୍ଣଙ୍କୁ ଆଶିର୍ବାଦ ଦେଲେ । ଏପରି ଅସମ୍ଭବକୁ କେହି ସମ୍ଭବ କରି ନଥିଲେ । ତା'ପରେ କୃଷ୍ଣ ଓ ବଳରାମ ଗୁରୁଙ୍କଠାରୁ ବିଦାୟ ନେଇ ନିଜ ରାଜ୍ୟକୁ ଫେରି ଆସିଲେ ।

ମଥୁରାରେ ବହୁ ଆଡ଼ମ୍ବର ସହକାରେ ଉଗ୍ରସେନ ଦୁଇ ଭାଇଙ୍କର ସ୍ୱାଗତ କଲେ । ରାଜ୍ୟରେ ନାନା ଆନନ୍ଦ ଉତ୍ସବ ଲାଗି ରହିଲା । ଏମିତି କିଛିଦିନ ବିତିଗଲା ।

କଂସର ମୃତ୍ୟୁ ପରେ ତା'ର ଶ୍ୱଶୁର ଜରାସନ୍ଧ ମଥୁରା ଉପରେ ଆକ୍ରମଣ କରିବାକୁ ମନସ୍ଥ କଲା ।

କଂସର ଦୁଇ ପାଟରାଣୀ ଥିଲେ ଜରାସନ୍ଧର ଦୁଇ ଝିଅ । ସେମାନଙ୍କର ଅକାଳ ବୈଧବ୍ୟରେ ବ୍ୟଥିତ ହୋଇ ଜରାସନ୍ଧ ପ୍ରତିଶୋଧ ନେବାକୁ ଚାହିଁଲା । ସୈନ୍ୟସାମନ୍ତ ନେଇ ସେ ମଥୁରା ଦିଗରେ ଅଗ୍ରସର ହେଲା ଓ ଯୁଦ୍ଧ ପୂର୍ବରୁ ଦୂତ ପଠାଇ କୃଷ୍ଣଙ୍କ ପାଖକୁ ବାର୍ତ୍ତା ପ୍ରେରଣ କଲା । ସେଥିରେ ଲେଖାଥିଲା, "କୃଷ୍ଣ ବଳରାମ, ତୁମେ ଦୁଇଜଣ କଂସକୁ ବିନା ଦୋଷରେ ବଧ କରିଛ

ସେ ଥିଲା ମୋର ଜାମାତା । ତା'ର ମୃତ୍ୟୁର ପ୍ରତିଶୋଧ ନେବାକୁ ମୁଁ ଆସୁଛି । ମୁଁ ମନେ ମନେ ନିଶ୍ଚୟ କରିଛି ଶେଷ ପର୍ଯ୍ୟନ୍ତ ମୁଁ ଲଢ଼ିବ । ଯୁଦ୍ଧରେ ତୁମେ ଅବା ମୁଁ କାହାର ହେଲେ ମୃତ୍ୟୁ ଘଟିବ । ସେ ପର୍ଯ୍ୟନ୍ତ ଯୁଦ୍ଧ ଚାଲୁ ରହିବ । ପ୍ରସ୍ତୁତ ରୁହ । ମୋର ପରାକ୍ରମ ଅକ୍ରୂର ଓ ସାତ୍ୟକଠାରୁ ବୁଝିନେବ ।"

କୃଷ୍ଣ ଉକ୍ତି ପଢ଼ି ମନ୍ଦହାସ କଲେ । ତା'ପରେ କହିଲେ, "ମୁଁ ତ ମୋ ତରଫରୁ ତା'ର ରାଜ୍ୟ ଆକ୍ରମଣ କରିଥା'ନ୍ତି । ଭଲ ହେଲା ସେହି ଦୁଷ୍ଟ, ଦୁରାତ୍ମା ଏଠାକୁ ଆସୁଛି । ମୁଁ ତାକୁ ବଧ କରି ସେହି ସିଂହାସନରେ ତା'ର ପୁତ୍ରକୁ ବସାଇବ ।"

ଦୂତରୂପୀ ଜରାସନ୍ଧର ଦୁଇ ପୁତ୍ରଙ୍କୁ ଆଦରର ସହ ସତ୍କାର କରି କୃଷ୍ଣ ବିଦାୟ ଦେଲେ ।

ସେମାନେ ଯିବା ପରେ ମଥୁରାର ମନ୍ତ୍ରୀ ଓ ସେନାପତିମାନେ ଏ ଖବର ଶୁଣି ଭୟରେ ଥରିଲେ । ଉଗ୍ରସେନ ମଧ୍ୟ ବହୁତ ଭୟ କଲେ ।

ଶେଷରେ ଜଣେ ବୃଦ୍ଧ ମନ୍ତ୍ରୀ ଶ୍ରୀକୃଷ୍ଣଙ୍କୁ କହିଲେ, "ବତ୍ସ, ଜରାସନ୍ଧ ବହୁତ କ୍ରୂର ସ୍ୱଭାବର । ସେ ମଥୁରା ଆକ୍ରମଣ କଲେ ଅସଂଖ୍ୟ ନିରୀହ ପ୍ରଜା ଅଯଥାରେ ମୃତ୍ୟୁ ମୁଖରେ ପତିତ ହେବେ । କଂସର ନିଜ ବଳ ଉପରେ ବହୁତ ବିଶ୍ୱାସ ଥିବାରୁ ସେ ମଥୁରାର ସୈନ୍ୟ ଓ ଯୁଦ୍ଧ ସରଞ୍ଜାମ ବିଷୟରେ ଆଦୌ ଧ୍ୟାନ ଦେଉ ନଥିଲା । ତେଣୁ ସେସବୁ ଦୃଷ୍ଟିରୁ ତାହା ମଧ୍ୟ ସୁଶୃଙ୍ଖଳିତ ହୋଇ ନାହିଁ । ଏବେ ଏପରି ପରିସ୍ଥିତିରେ ଜରାସନ୍ଧ ସହିତ ଯୁଦ୍ଧ କରିବା ମାନେ ମଥୁରା ରାଜ୍ୟର ଧ୍ୱଂସ ଅନିବାର୍ଯ୍ୟ । ଏସବୁ ଭାବିଚିନ୍ତି କରାଯିବା ଉଚିତ୍ । ଆପଣମାନଙ୍କ ଶକ୍ତି ପରାକ୍ରମ ଉପରେ ଆମର ସମସ୍ତ ଆସ୍ଥା ଅଛି । ତଥାପି ଭାବିଚିନ୍ତି କାର୍ଯ୍ୟ ନ କରିଲେ ପ୍ରଜାବର୍ଗଙ୍କର ଅଯଥା ଜୀବନ କ୍ଷୟ ହେବ । ଏ ବିଷୟରେ ଯାହା ଉଚିତ ମନେ କରିବେ ତାହା ବିଚାର କରି କରାଯାଉ, ଏତିକି ମୋର ପ୍ରାର୍ଥନା ।"





# ଅଦ୍ଭୁତ ବଂଶୀ

କୌଣସି ଗୋଟିଏ ଗ୍ରାମରେ ବିକାଶ ନାମକ ଏକ ଧନୀ ଯୁବକ ଥାଏ । ତା'ର ଲଳିତକଳା ପ୍ରତି କିଛିଟା ଆକର୍ଷଣ ଥାଏ । ସେ ନିଜେ ଗୀତ ରଚନା କରୁଥାଏ ଓ ବେଳେ ବେଳେ ଗୀତ ଗାଉଥାଏ ମଧ୍ୟ ।

ବିକାଶ ତା'ର କବିତା ଓ ଗୀତ ଯୋଗୁ ଖୁବ୍ ଲୋକପ୍ରିୟ ହୋଇଥାଏ । କିଛିଦିନ ପରେ ସେ ପଦ୍ମା ନାମକ ଏକ ସୁନ୍ଦରୀ ଝିଅକୁ ବିବାହ କଲା । ଦୁହେଁ ଆନନ୍ଦରେ ଥା'ନ୍ତି । କିନ୍ତୁ ଭାଗ୍ୟର ବିପର୍ଯ୍ୟୟ ଏପରି ହେଲା ଯେ ପଦ୍ମା ହଠାତ୍ କୌଣସି ଏକ ରୋଗରେ ପଡ଼ି ମୃତ୍ୟୁ ବରଣ କଲା । ବିକାଶର ହୃଦୟ ଭାଙ୍ଗି ପଡ଼ିଲା । ଦୁନିଆରେ ସବୁ କିଛି ତାକୁ ପିତା ଲାଗିଲା । ଏଣିକି ସେ ଯେଉଁ କବିତା ସବୁ ଲେଖିଲା ସେଗୁଡ଼ିକ ବିଷାଦରେ ଭରା, ଦୁଃଖରେ ଭରା । ତେଣୁ କ୍ରମେ ତା'ର କବିତା ଶୁଣିବା ପାଇଁ ଆସୁଥିବା ଲୋକଙ୍କ ସଂଖ୍ୟା କ୍ରମେ ହ୍ରାସ ହେବାକୁ ଲାଗିଲା ।

ଏଣେ ଧନସମ୍ପତ୍ତିର ସହାୟତା ମାଗିବାକୁ ଯେଉଁ କେତେ ଲୋକ ଆସନ୍ତି ସେମାନଙ୍କୁ ବିକାଶ ନାହିଁ କରିପାରେ ନାହିଁ । ଏପରି ସମୟ ଆସିଲା ଯେ ତା'ର ପ୍ରାୟ ସବୁ ଧନ ଶେଷ ହୋଇଗଲା । ସେ ବହୁତ ବିରକ୍ତ ହେଲା । ନିଜ ଘରଟିକୁ କୌଣସି ସମ୍ପର୍କୀୟ ଦାୟିତ୍ୱରେ ରଖି ତୀର୍ଥାଟନ କରିବାକୁ ବାହାରି ଗଲା । ପ୍ରଥମେ ସେ ଯାଇ ପହଞ୍ଚିଲା କାଶୀ ତୀର୍ଥରେ । ସେଠାରେ ସେ ନିଜର ଗୀତ ସବୁ ଶୁଣାଇଲା, କବିତା ପାଠ କରି ଶୁଣାଇଲା, ହେଲେ ସେଥିପାଇଁ କେହି ଉତ୍ସାହ ଦେଖାଇଲେ ନାହିଁ । ବିକାଶ ଭାବିଲା ଯେ ନିଜ ଗ୍ରାମରେ ଯଦି ତା'ର ଦୁଃଖ କେହି ବୁଝିଲେ ନାହିଁ, ଏଠାରେ ବା ଏଡ଼େ ସହରରେ କିଏ ତା'ର



ଦୁଃଖ ଲୁଚିବ ? ଏମିତିକି ବେଳେ ବେଳେ ଲୋକମାନେ ଭିଖାରି ଭାବି ତା' ପାଖରେ କିଛି ପଇସା ଫୋପାଡ଼ି ଦେଇ ଯା'ନ୍ତି ।

ଏପରି ପରିସ୍ଥିତି ଦେଖି ବିକାଶର ମନ ବଡ଼ ଦୁଃଖ ହେଲା । ସେ ମନସ୍ଥ କଲା କି ଗଙ୍ଗାରେ ଝାସ ଦେଇ ପ୍ରାଣ ତ୍ୟାଗ କରିବ । ଆଉ ବଞ୍ଚିବାରେ ବା କି ଲାଭ । ତା'ପରେ ଗଙ୍ଗା କୂଳକୁ ଯାଇ ଭଗବାନଙ୍କୁ ଧ୍ୟାନ କରିବା ପରେ ଗଙ୍ଗାମାତାଙ୍କୁ ଧ୍ୟାନ କରି କହିଲା, "ହେ ଗଙ୍ଗାମାତା, ମୋର ବଞ୍ଚିବାର ପ୍ରୟୋଜନ କ'ଣ ? ମୋର ଟଙ୍କା ଥିବାବେଳେ ବହୁଜନ ମୋ ନିକଟକୁ ଆସୁଥିଲେ । ଏବେ ଟଙ୍କା କମିଯିବାରୁ ମୋତେ ସେମାନେ ତ୍ୟାଗ କରିଛନ୍ତି । ମୋର ବଞ୍ଚିବା ପାଇଁ କୌଣସି ଆକର୍ଷଣ ନାହିଁ । ତେଣୁ ମୋତେ ତୁ ଉଦ୍ଧାର କର । ମୁଁ ଏବେ ତୋର କୋଳରେ ଚିର ଆଶ୍ରୟ ପାଇବି ।"

ଠିକ୍ ଏହି ସମୟରେ ଜଣେ ସାଧୁ ସେଠାରେ ଆସି ପହଞ୍ଚିଲେ ଓ ତା' ହାତ ଧରି ପାଣିରୁ ଉଠାଇ ଆଣିଲେ । ବାଟ ଗୃନ୍ ଗୃଲ୍ଲ ସାଧୁଜି କହିଲେ, "ବତ୍ସ, ତମର ତ ବୟସ କମ୍, ଏପରି ଏକ ଭୟାନକ କାର୍ଯ୍ୟ କରିବାକୁ କାହିଁକି ଯାଉଥିଲ ?"

ବିକାଶ ସାଧୁଙ୍କୁ ସବୁ କଥା କହିଲା । ସେ କହିଲା, "ସ୍ୱାମୀଜି, ମୋର ପତ୍ନୀର ମୃତ୍ୟୁ ହେବାରୁ ମୋର ବହୁତ ଦୁଃଖ ହେଲା । ମୁଁ କିନ୍ତୁ କବିତା ଲେଖି ଓ ଗୀତ ଗାଇ ଗାଇ ସେହି ଦୁଃଖକୁ ସହି ନେଉଥିଲି । କେତେକ ଗ୍ରାମୀଣ ବ୍ୟକ୍ତି ମଧ୍ୟ ମୋ ପାଖକୁ ଆସି ସେହି ସଙ୍ଗୀତ ଶୁଣୁଥିଲେ ଓ ସେମାନଙ୍କ ଦୁଃଖ ଭୁଲି ଯାଉଥିଲେ । କିନ୍ତୁ ପରେ ମୁଁ ଉପଲବ୍ଧି କଲି ମୋର ଧନ ଶେଷ ହେବା ପରେ ଆଉ କେହି ମୋ ପାଖକୁ ଆସୁ ନାହାନ୍ତି । ମୋ ମନରେ ବିଷାଦ ଓ ବିରକ୍ତି ଭାବ ଆସିଲା । ଏଣେ ପତ୍ନୀବିୟୋଗ ଜନିତ ଦୁଃଖ, ତା' ଉପରେ ସଂସାରରେ ଲୋକମାନଙ୍କର ଏପରି ସ୍ୱାର୍ଥପର ସ୍ୱଭାବ । ଏସବୁ ଦେଖି ମୋର ମନେହେଲା ମୋ କବିତା ବା ସଙ୍ଗୀତର କୌଣସି ମୂଲ୍ୟ ନାହିଁ । ତେଣୁ ମୋ ଜୀବନର

ମଧ୍ୟ କୌଣସି ମୂଲ୍ୟ ନାହିଁ । କ'ଣ ପାଇଁ ମୁଁ ବଞ୍ଚିବି, ଯଦି ବଞ୍ଚିବି କି ଅବଲମ୍ବନ ନେଇ ? ଏତିକି ମୋତେ ବୁଝାଇ ଦିଅନ୍ତୁ ।"

ସାଧୁ ହସି ହସି କହିଲେ, "ଦେଖ, ପ୍ରତ୍ୟେକ ପ୍ରାଣୀ ଜନ୍ମ ହେବା ମାତ୍ରେ ମୃତ୍ୟୁ ତା' ସହିତ ନେଇକରି ଆସିଥାଏ । ଚନେ ନା ଚନେ ଏହା ଘଟିବ ନିଜର ଆୟୁଷ ଅନୁସାରେ । କିନ୍ତୁ ଆତ୍ମହତ୍ୟା ମହାପାପ । ତମେ ତମର ଦୁଃଖ ମୋତେ ବୁଝାଇ କୁହ, ମୁଁ ତାହା ଦୂର କରିବାର ପ୍ରୟାସ କରିବି ।"

"ସ୍ୱାମୀନ୍, ଏହି ସଂସାରରେ ପ୍ରତ୍ୟେକ ପ୍ରାଣୀ କିଛି ନା କିଛି ଦୁଃଖ ଭୋଗ କରୁଛି । କେତେକ ବ୍ୟକ୍ତିଙ୍କ ଧାରଣା ସବୁ ଦୁଃଖର ଓ ସବୁ ସୁଖର ମୂଳ ଧନ । ମୁଁ କିନ୍ତୁ ଏହା ମାନେ ନାହିଁ । ମୁଁ ଭାବେ ମାନସିକ ଶାନ୍ତି ରହିଲେ ଦୁଃଖର ପ୍ରଭାବ କଟିଯିବ । ଆଉ ସେଥିପାଇଁ ସଙ୍ଗୀତ ବିଦ୍ୟା ହେଉଛି ସର୍ବୋତ୍ତମ । କିନ୍ତୁ ମୁଁ ସଙ୍ଗୀତ ବିଦ୍ୟାରେ ଏତେ ପାରଙ୍ଗମ ନୁହେଁ ଯେ ସମସ୍ତିଙ୍କୁ ଶାନ୍ତି ଓ ଆନନ୍ଦ ଦେଇ ପାରିବି । ମୋର ଇଚ୍ଛା ମୁଁ ସଙ୍ଗୀତ ଦ୍ୱାରା ସମସ୍ତିଙ୍କର ମଙ୍ଗଳ ଯେପରି କରିପାରିବି । ମହାତ୍ମନ, ଆପଣ କ'ଣ ମୋର ଏ ଅଭିଳାଷ ପୂରଣ କରି ପାରିବେ ?"

ବିକାଶର କଥା ଶୁଣି ସାଧୁ ଅଳ୍ପ ହସିଲେ । ତା'ପରେ ତା' ହାତରେ ଗୋଟିଏ ଥଳୀ ଓ ଗୋଟିଏ ବଂଶୀ ଦେଇ କହିଲେ, "ବତ୍ସ,



ତୁମେ ଯେତେବେଳେ ଏହି ବଂଶୀଟି ବଜାଇବ, ସେତେବେଳେ ଏଥିରୁ ଏକ ସୁନ୍ଦର ଅଦ୍ଭୁତ ସ୍ୱର ପ୍ରକଟ ହେବ; ତାହା ଶୁଣି ଶ୍ରୋତାମାନେ ଖୁବ୍ ଆନନ୍ଦ ପାଇବେ । ସେମାନଙ୍କର ଆନନ୍ଦହିଁ ତୁମକୁ ଆଣିଦେବ ମାନସିକ ପ୍ରଶାନ୍ତି । ଏବେ ବାକି ରହିଲା ଥଳୀଟି । ଥଳୀଟି ତୁମକୁ ତୁମ ଇଚ୍ଛା ଅନୁସାରେ ଖାଦ୍ୟ ଓ ବସ୍ତ୍ର ଯୋଗାଉଥିବ । ତେଣୁ ତମେ କାହା ଉପରେ ନିର୍ଭର ନ କରି ବଂଶୀବାଦନ କରି ସମସ୍ତିଙ୍କୁ ଆନନ୍ଦ ପ୍ରଦାନ କରୁଥିବ । ମନେରଖ ଯେ ଏହି ଥଳୀ ଓ ବଂଶୀର ଗୁଣ କେବଳ ତୁମ ପାଖରେହିଁ କାମ ଦେବ । ଅନ୍ୟ କିଏ ଚେଷ୍ଟା କଲେ ସୁଦ୍ଧା ପାରିବେ ନାହିଁ ।"



ବା ଦୁର୍ବଳତା ମନ ଭିତରେ ଦେଖାଦିଏ । ସେପରି ହେଲେ ଏହି ଥଳୀ ଓ ବଂଶୀ ସେମାନଙ୍କର ଶକ୍ତି ହରାଇବେ, ସେଥିପାଇଁ ସାବଧାନ କରି ଦେଉଛି । ପୁଣି ସ୍ୱାର୍ଥରୁ ଯଦି କେହି ନ୍ୟାୟସଙ୍ଗତ କଷ୍ଟ ପ୍ରତି ତୁମର ମତ ବଦଳାଇବ ତେବେ ଏ ବଂଶୀରେ ଏକ ସ୍ୱର ବାଜିବ ଯାହା କେବଳ ତୁମକୁହିଁ ଆନନ୍ଦ ଦେବ । ଅନ୍ୟମାନଙ୍କୁ ନୁହେଁ । ପୁଣି ଏହି ଥଳୀ ତୁମର ହଜି ଯାଇଥିବା ସମ୍ପତ୍ତିର ସନ୍ଧାନ ଦେବ । ପୁଣି ତମେ ନୂଆ ଉତ୍ସାହରେ ସବୁ ଆରମ୍ଭ କରିବ—"

"ଯେ ଆଜ୍ଞା, ଆପଣଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପାଳନ କରିବି ।" କହିଲା ବିକାଶ ଓ ସାଧୁଙ୍କୁ ପ୍ରଣାମ କରି ନିଜ ଗ୍ରାମକୁ ଗଲା ।

ପ୍ରଥମେ ବିକାଶ ବିଷୟରେ ଗ୍ରାମରେ କାହାର ଆଗ୍ରହ ନଥିଲା । କିନ୍ତୁ କ୍ରମେ ସେହି ଅଦ୍ଭୁତ ବଂଶୀଟି ବଜାଇବାରୁ ଲୋକମାନେ ଆକର୍ଷିତ ହେଲେ । ସେହି ବଂଶୀର ମଧୁର ସ୍ୱର ଶୁଣି ସମସ୍ତେ ମୁଗ୍ଧ ଚକିତ ହେଉଥିଲେ । କିଛିଦିନ ମଧ୍ୟରେ ତା'ର ଖ୍ୟାତି ଦୂର ଗ୍ରାମ ମାନଙ୍କରେ ମଧ୍ୟ ବ୍ୟାପିଗଲା । ଶାରୀରିକ ଓ ମାନସିକ ବ୍ୟାଧିଯୁକ୍ତ ଲୋକମାନେ ସବୁ ସେଠାକୁ ଆସି ବଂଶୀ ଶୁଣି ଆରୋଗ୍ୟ ଲାଭ କରୁଥିଲେ । ଅଗଣିତ ଲୋକ ଆରୋଗ୍ୟ ଲାଭ କରି ଆନନ୍ଦିତ ହେଉଥିବାରୁ ବିକାଶ ମଧ୍ୟ ଆନନ୍ଦିତ ହେଉଥିଲା ।

ସାଧୁଙ୍କଠାରୁ ଥଳୀ ଓ ବଂଶୀ ପାଇ ବିକାଶ ଆନନ୍ଦରେ ଅଧୀର ହୋଇ ପଡ଼ିଲା । ସେ ସାଧୁଙ୍କ ଚରଣରେ ପ୍ରଣାମ କରି କହିଲା, "ମହାତ୍ମନ, ଆପଣଙ୍କ କୃପାରୁହିଁ ମୋର ପୁନର୍ଜୀବନ ଲାଭ ହୋଇଛି । ଏବେ ମୁଁ ମୋର ଗ୍ରାମକୁ ଫେରିଯାଇ ଆପଣ ଦେଇଥିବା ଥଳୀ ଦ୍ୱାରା ଗ୍ରାମବାସୀମାନଙ୍କର ସେବା କରିବି । ମୋତେ ଆଶୀର୍ବାଦ କରନ୍ତୁ ।"

ସାଧୁ ବିକାଶକୁ ଆଶିର୍ବାଦ ଦେଇ କହିଲେ, "ଅତି ଆନନ୍ଦର କଥା ଯେ ତୁମେ ନିଃସ୍ୱାର୍ଥ ଭାବରେ ଲୋକହିତକର କାର୍ଯ୍ୟ କରିବାକୁ ଯାଉଛ । ତୁମର ସଂକଳ୍ପ ପ୍ରଶଂସନୀୟ । କିନ୍ତୁ ଏପରି ମଧ୍ୟ ହୁଏ ଯେ ହଠାତ୍ କୌଣସି ସ୍ୱାର୍ଥ

କିନ୍ତୁ ଏ ଅବସ୍ଥା ବେଶିଦିନ ତିଷ୍ଠି ରହିଲା ନାହିଁ । ବିକାଶ ଯେତେବେଳେ ବୈରାଗ୍ୟ-ବଶରେ ତୀର୍ଥାଟନ କରିବାକୁ ଯାଇଥିଲା ସେତେବେଳେ ସେ ତା'ର ଘରବାଡ଼ି ଜଣେ ସମ୍ପର୍କୀୟ ବ୍ୟକ୍ତିଙ୍କ ଜିମାରେ ଛାଡ଼ି ଯାଇଥିଲା । ସେ ବ୍ୟକ୍ତି ଭାବିଥିଲା କି ବିକାଶ ଆଉ ଫେରିବ ନାହିଁ । ତେଣୁ ଘରବାଡ଼ିର ମାଲିକ ସେ ନିଜେ । ଏବେ ବିକାଶ ଫେରିବାର ଦେଖି ତା' ମନ ଦୁଃଖ ହୋଇଗଲା । ତାକୁ କୌଣସି ମତେ ବଦନାମ କରାଇ ସେଠାରୁ ତଡ଼ିବାକୁ ସେ ଚାହିଁଲା । ସେ ଏପରି କିଛି ବିକାଶ ବିରୁଦ୍ଧରେ ପ୍ରଚାର କଲା ଯେଉଁଥିରେ କି ଗ୍ରାମଲୋକଙ୍କ ମନରେ ସନ୍ଦେହ ଆସିଲା । ସେମାନେ ଭାବିଲେ ଦିନ ପରେ ଦିନ ଏ ଲୋକଟା ବଂଶୀ ବଜାଇ ରୋଗଶୋକ ଦୂର କରୁଛି ସତ, କିନ୍ତୁ ଏହାର ପଛରେ ତା'ର କି ସ୍ୱାର୍ଥ ରହିଛି ?



ଦିନେ ସଙ୍ଗୀତ ସଭାଟିଏ ହେଲା । ବିକାଶର ବଂଶୀରେ ସମସ୍ତେ ମୁଗ୍ଧ । କିନ୍ତୁ ପୂର୍ବୋକ୍ତ ବ୍ୟକ୍ତି ସଭାରେ ଉଠିପଡ଼ି କହିଲା, "ଦେଖ, ଗ୍ରାମବାସୀଙ୍କ ତରଫରୁ ମୁଁ କହୁଛି, ସେମାନେ ଜାଣିବାକୁ ଚାହାନ୍ତି ଏପରି ବଂଶୀବାଦନ ପଛରେ ତୁମର କି ସ୍ୱାର୍ଥ ଅଛି । ଦିନ ପରେ ଦିନ ବଜାଇ ଚାଲିଛ, ଆଉ ଏଇଟା କ'ଣ ସମ୍ପୂର୍ଣ୍ଣ ନିଃସ୍ୱାର୍ଥପର ଭାବେ ?"

"ହଁ, ତମେ ଠିକ୍ କହିଛ । ମୁଁ ବଜାଇଥାଏ ସମ୍ପୂର୍ଣ୍ଣ ନିଃସ୍ୱାର୍ଥପର ଭାବରେ । ଯେତେବେଳେ ଲୋକଙ୍କର ନାନା ରୋଗ ଓ ଶୋକ ଦୁଃଖ ମୋ ବଂଶୀଧ୍ୱନୀରେ ଦୂର ହୁଏ, ସେଥିରେ ସେମାନେ ମାନସିକ ଶାନ୍ତି ଓ ଆନନ୍ଦ ପାଆନ୍ତି । ତାଙ୍କ ଆନନ୍ଦରେହିଁ ମୋର ଆନନ୍ଦ । ତା'ଛଡ଼ା ମୋର ଅନ୍ୟ କୌଣସି ସ୍ୱାର୍ଥ ନାହିଁ ।"

ସେହି ବ୍ୟକ୍ତିଟି କହିଲା, "ଆଚ୍ଛା, ଏହାହିଁ ଯଦି ତୁମର ଇଚ୍ଛା, ତେବେ ବରଂ ରାଜ-ଦରବାରକୁ ଯାଇ ତୁମର ଅସାଧାରଣ ପ୍ରତିଭା ଦେଖାଇଲେ ପୁରସ୍କାର ବି ଅନେକ ପାଇବ ଆଉ ଅଧିକ ଲୋକ ମଧ୍ୟ ତୁମ ବିଷୟରେ ଜାଣି ପାରିବେ ।

ବିକାଶ କହିଲା, "ତୁମ କଥା ସତ, ହେଲେ ମାନସିକ ଶାନ୍ତି ଓ ଆନନ୍ଦ ପ୍ରଦାନ



କରୁଥିବା ବିଦ୍ୟା ପାଇଁ ପୁରସ୍କାର ଓ ସମ୍ମାନର କ'ଣ ଲୋଡ଼ା ? ଯଦି ରାଜାଙ୍କର ଦରକାର ହୁଏ ତ ସେ ନିଜେ ଖୋଜି ଖୋଜି ଏଠାରେ ପହଞ୍ଚିବେ ।"

ସେ କହିଲା, "ଭାଇମାନେ ଶୁଣୁଛନ୍ତି ତ ବିକାଶ ଭିତରେ ଅହଙ୍କାର କେତେଦୂର ଗଭୀର ହେଲଣି ?"

ଗ୍ରାମବାସୀମାନେ ସବୁ ଶୁଣି ଚୁପ୍ ରହିବାରୁ ସେ ବିରକ୍ତ ହୋଇ କହିଲା, "ପିଏ ତାର ଅହଙ୍କାରକୁ, ସହିବ ସେ ହିଁ ତା'ର ବଂଶୀ ଶୁଣିବ ।" ଏଥିରେ ମଧ୍ୟ ଗ୍ରାମବାସୀ ଚୁପ୍ ହୋଇ ରହିଲେ । କେହି କିଛି କହିଲେ ନାହିଁ । କିନ୍ତୁ ବିକାଶ ଉଠିପଡ଼ି କହିଲା, "ଆପଣମାନଙ୍କର କଲ୍ୟାଣ ପାଇଁ ମୁଁ ଏ ବଂଶୀ ବଜାଉଛି । ଯଦି ଆପଣମାନଙ୍କର ବିଚାର ଏହିପରି ହୋଇଥାଏ, ତେବେ ମୁଁ ଏବେହିଁ ଏହି ବଂଶୀବାଦନ ବନ୍ଦ କରିଦେବି ।"

ଗ୍ରାମବାସୀ ଚୁପ୍ ରହିଥାନ୍ତି । ବିକାଶ ସେଠାରୁ ଚାଲିଗଲା । ପରଦିନ ବିକାଶ ସହିତ ସେହି ବ୍ୟକ୍ତି ଦେଖା କରି କହିଲା, "ମିତ୍ର, ମୋତେ କ୍ଷମା କରିଦିଅ । ମୁଁ ତୁମ ବିରୁଦ୍ଧରେ ଏସବୁ କହିଥିଲି ଦୁଷ୍ଟବୁଦ୍ଧି ବଶତଃ । କିନ୍ତୁ ପ୍ରକୃତରେ ଦେଖିଲେ ତୁମ ପ୍ରତି ମୋର ସ୍ନେହ, ଶ୍ରଦ୍ଧା ଓ ସମ୍ମାନର ଭାବ ଅଛି । ଆଉ ଶୁଣ, ଯଦି ବାହାରକୁ ଚାଲିଯାଉଛ, ତେବେ ଘରବାଡ଼ି ମୋ ନାମରେ ଲେଖିଦେଇ ଯାଅ । ମୋର ବଡ଼ ସଂସାର । ବହୁତ ଛୁଆପିଲା । ଚଳିବାକୁ ବହୁ କଷ୍ଟ ।"

ବିକାଶ କିଛି ନ କହି ଚୁପ୍ ରହିଲା । କିଛି ଦିନ ପରେ ଶ୍ରୀକର ମାମକ ଜଣେ ବ୍ୟକ୍ତି ଆସି ବିକାଶକୁ କହିଲା, "ମିତ୍ର, ତୁମ ବନ୍ଧୁ ସଭାରେ ତୁମକୁ ସେଦିନ ଅପମାନସୂଚକ କଥା କହିଲା କେବଳ ତୁମ ଘରବାଡ଼ି ଲୋଭରେ । ତମେ ଏ ସ୍ଥାନ ଛାଡ଼ି ଚାଲିଗଲେ ସମ୍ପତ୍ତି ସବୁ ସେ ନେବ । କିନ୍ତୁ ଗ୍ରାମବାସୀମାନେ ଏସବୁ ବିଶ୍ୱାସ କରି ନାହାନ୍ତି । ତୁମ ସଙ୍ଗୀତ ଦ୍ୱାରା ସମସ୍ତେ ପ୍ରଭାବିତ । ମତେ ଯଦି ବିଶ୍ୱାସ ନ କରୁଛ ନିଜେ ଯାଇ ସମସ୍ତିଙ୍କୁ ପଚାର । ଏବେ ତମେ ପୁଣି ବଂଶୀ ବଜାଇବାକୁ ଆରମ୍ଭ କର ।"

ତା'ପରେ ବିକାଶ ଗ୍ରାମବାସୀଙ୍କ ସହିତ କଥାବାର୍ତ୍ତା କରି ବୁଝିଲା ଯେ ସେମାନେ ପୁଣି ତା'ର ସଙ୍ଗୀତ ଶୁଣିବାକୁ ଚାହାନ୍ତି । ଶ୍ରୀକର କହିଲା, "ଏବେ ମୋ କଥାର ସତ୍ୟତା ଉପଲବ୍ଧି କଲ ତ ?" ବିକାଶ ତତ୍‌କ୍ଷଣାତ୍ ତା' ଥଳୀରୁ ବଂଶୀ କାଢ଼ି ବଜାଇଲା ଓ ଶ୍ରୀକରକୁ ପଚାରିଲା, "ସ୍ୱରଟି କିମିତି ଲାଗିଲା ?"

ଶ୍ରୀକର ଟିକିଏ ବିସ୍ମୟ ପ୍ରକାଶ କରି କହିଲା, "ଇଏ ତ ମୋତେ ଅତି ସାଧାରଣ ଲାଗିଲା ।"

ବିକାଶ କହିଲା, "ମୋତେ ତ ଭଲ ଲାଗିଲା । ଏଣିକି ମୋ ବଂଶୀରୁ ଅନ୍ୟମାନଙ୍କୁ ଆନନ୍ଦ ଦେବାପରି ସ୍ୱର ବାହାରିବ ନାହିଁ । ଯାହା ବାହାରିବ, ସେଥିରେ କେବଳ ମୁହିଁ ଆନନ୍ଦ ପାଇବି ।"

"ଏସବୁ କଥା ମୁଁ କିଛି ବୁଝିପାରୁ ନାହିଁ ।" ଶ୍ରୀକର କହିଲା ।

ବିକାଶ ତାକୁ ସାଧୁଙ୍କ ସହିତ ଘଟିଥିବା ସମସ୍ତ ଘଟଣା କହିବା ପରେ କହିଲା, "ମୋର ଏହି ବଂଶୀରେ ସାଧୁଙ୍କ କୃପାରୁ ଅଲୌକିକ ଶକ୍ତି ଥିଲା । ଗ୍ରାମବାସୀମାନେ ସେସବୁ ବୁଝିପାରିଲେ ନାହିଁ । ବଂଶୀ ସ୍ୱରର ମହାନତା ଜାଣି ପାରିଲେ ନାହିଁ । ତେଣୁ ବଂଶୀର ସ୍ୱର ମଧ୍ୟ ବଦଳିଗଲା । ଯେବେ ଗ୍ରାମବାସୀମାନେ ସବୁ ବୁଝି ପୁଣି ଚାହିଁବେ, ସେତେବେଳେ ପୁଣି ସେ ସ୍ୱର ଫେରି ଆସିବ । ଏଥିରେ ମୋର କୌଣସି ସ୍ୱାର୍ଥ ନଥିଲା ।"

ତା'ପରେ ବିକାଶ ଗ୍ରାମ ଛାଡି ଦୂରରେ ଏକ ନିର୍ଜନ ସ୍ଥାନରେ କୁଟୀରଟିଏ ବନାଇ ରହିଥାଏ । ନିଜେ ବଂଶୀ ବଜାଇ ଆନନ୍ଦ ପାଏ । ଥଳୀ ଯୋଗୁ ତା'ର ଆଉ କିଛି ଅଭାବ ନଥାଏ । ଥଳୀରୁ ଖାଦ୍ୟବସ୍ତୁ ସବୁ ବାହାର କରି ଗରିବ, ଦୁଃଖୀ ଲୋକଙ୍କୁ ବାଣ୍ଟି ସେ ଖୁସିରେ ଜୀବନ ଅତିବାହିତ କଲା ।





# ଯାଦୁକାରୀ ଘଣ୍ଟି

ବହୁଦିନ ପୂର୍ବର କଥା । ଚୀନ୍‌ରେ ଦୁଇଭାଇ ଥା'ନ୍ତି । ବଡ଼ ବହୁତ କ୍ରୂର ସ୍ୱଭାବର, ଛୋଟ ଭାଇ ଖୁବ୍ ବୁଦ୍ଧିମାନ ଓ ପରୋପକାରୀ ।

ସେମାନଙ୍କର ପିତାଙ୍କର ସ୍ୱର୍ଗବାସ ପରେ ବଡ଼ ଭାଇ ଲିଆଙ୍ଗ୍ ସବୁ ସମ୍ପତ୍ତି ସାନ ଭାଇ ଚିଆଙ୍ଗ୍‌ଠାରୁ ନେଇଗଲା ଓ ସୁଖରେ ସବୁ ଟଙ୍କା ଲଗାଇ ଆନନ୍ଦରେ ଥାଏ । ସାନକୁ କିଛି ସମ୍ପତ୍ତି ଦେଇ ନଥାଏ । ତଥାପି ମଧ୍ୟ ସାନ-ଭାଇକୁ ଗ୍ରାମବାସୀମାନେ ଖୁବ୍ ଭଲ ପାଉଥିବାରୁ ତା'ର ଅଭାବ କିଛି ନଥାଏ । ସେ ଭାଇକୁ କିଛି କୁହେ ନାହିଁ ତା' ଦୁଃଖରେ ସିଏ ଥାଏ ।

ଚିଆଙ୍ଗ ଗାଁର ସର୍ଦ୍ଦାର ଘରେ କାମଦାମ କରୁଥାଏ ଓ ଗୋଟିଏ ଛୋଟିଆ କୁଡ଼ିଆରେ ରହୁଥାଏ । ସର୍ଦ୍ଦାରଙ୍କ ଝିଅ ଚିଆଙ୍ଗ୍ ପ୍ରତି ବେଶ୍ ଅନୁରକ୍ତ ଥାଏ । କିନ୍ତୁ ସେ ଜାଣିଥିଲା ଯେ ଚିଆଙ୍ଗ୍ ଅତ୍ୟନ୍ତ ଗରିବ ହୋଇଥିବା ଦୃଷ୍ଟିରୁ ତା' ସର୍ଦ୍ଦାର ବାପା ଚିଆଙ୍ଗ୍ ସହ ତା'ର ବିବାହ ଦେବେ ନାହିଁ । ତଥାପି ଝିଅଟି ଚିଆଙ୍ଗର ଭଲ ମନ୍ଦ ବୁଝୁଥାଏ ।

ଦିନେ ସେ ନିଜ ଗ୍ରାମରୁ ଅନ୍ୟ ଗ୍ରାମକୁ କିଛି ଭାର ବୋହି ନେଇଯାଉଥାଏ । ସେ ପାହାଡ଼ ରାସ୍ତା ଉପରେ ଚାଲୁଥାଏ । ବର୍ଷା ହେବା ଯୋଗୁ ପାହାଡ଼ ଉପର ରାସ୍ତା ଖସଡ଼ା ହୋଇଥାଏ ଯାଉ ଯାଉ ହଠାତ୍ ତା'ର ଗୋଡ଼ ଖସଡ଼ି ସେ ପଡ଼ିଗଲା । ଦେଖିଲା ଭାର ଭିତରେ କେବଳ ତରଳ ରଙ୍ଗ ଥିଲା । ସବୁ ଗୁଡ଼ିକ ତା' ଦେହ ଉପରେ ଅଜାଡ଼ି ହୋଇ ବୋହିଗଲା । ଆଉ ପବନ ବାଜି ସେସବୁ ଦେହରେହିଁ ଶୁଖିଗଲା । ଏତେ ଅଠା ଲାଗିଗଲା ଯେ ସେ ସେଠାରୁ ଆଉ ଉଠି ପାରିଲା ନାହିଁ ।

କିଛି ସମୟ ପରେ କେତେକ ପିଶାଚ ଆସି ସେଠାରେ ପହଞ୍ଚିଲେ । ଚିଆଙ୍ଗ୍‌କୁ ଦେଖି




ଆନନ୍ଦରେ ସେମାନେ ପାଟିକଲେ, "ଦେଖିଲଣି ଏଠି ଚିନରେ ତିଆରି ଏକ ପିତୁଳା ପଡଛି, ଚାଲ ତାକୁ ଭାଙ୍ଗିଭୁଙ୍ଗି ଖାଇବା ।" ଏତିକି କହି ଦେହରେ ଶୁଖିଯାଇଥିବା ଚିନିରୁ ଖଣ୍ଡେ ଭାଙ୍ଗି ଖାଇଲେ ଓ ଆହୁରି ଆନନ୍ଦରେ ନାଚିଲେ । ଶେଷରେ ସେମାନଙ୍କ ରାଜା ଦୁଇସିଂଘବାଲା ପିଶାଚ ଆସି ପହଞ୍ଚିଲା ଓ କିଛି ଭାଙ୍ଗି ଖାଇଲା । ତା'ପରେ ସେ କହିଲା, "ଚାଲ, ଧରି ଏହାକୁ ଗୁମ୍ଫାରେ ନେଇ ରଖିବା । ପରେ ଖାଇବା । ଏବେ ମୋର ସେ ଯାଦୁକାରୀ ଘଣ୍ଟିଟି ନେଇ ଆସ ।"

ତତ୍କ୍ଷଣାତ୍ ପିଶାଚ ରାଜାର ଆଦେଶ ପାଳନ ହେଲା । ଚିଆଙ୍ଗ୍ ଜୀବନ ନ ଥିବାର ଛଳନା କରି ପଡି ରହିଥାଏ ଓ ସବୁ ଶୁଣୁଥାଏ । ସେ ଶୁଣିଲା ଯେ ପିଶାଚ ଯାଦୁକରି ଘଣ୍ଟିକୁ ଯାହା ଆଦେଶ ଦେଇ ବଜାଇ ଦେଉଥାଏ ତତ୍କ୍ଷଣାତ୍ ସେହି ଖାଦ୍ୟ ଆସି ଯାଉଥାଏ । ତା' ପରେ ସେମାନେ ଖେଳିବାକୁ ବାହାରିଗଲେ । ଏହି ସୁଯୋଗ ଦେଖି ଚିଆଙ୍ଗ୍ ଯାଦୁକାରୀ ଘଣ୍ଟିଟି ଚଟାପଟ ଧରି ନିଜ ପୋଷାକ ଭିତରେ ଲୁଚାଇ ଦେଲା ଓ ଶୀଘ୍ର ଶୀଘ୍ର ବାହାରି ପଳାଇଲା ।

ତା' ପରଠାରୁ ସେ ସେଥିରୁ ଖାଦ୍ୟଦ୍ରବ୍ୟ ଯାହା ଚାହେଁ ପାଏ । ଆଉ ତା' ପାଇଁ ଜୀବିକା ନିର୍ବାହ କରିବା ଏକ ସମସ୍ୟା ହୋଇ ରହିଲା ନାହିଁ । ସେ ଅବଶ୍ୟ କୃଷିବାସ କରୁଥାଏ; କିନ୍ତୁ ଯାଦୁଘଣ୍ଟି ଦ୍ୱାରା ଖାଦ୍ୟ ଇତ୍ୟାଦି ପାଇଁ ଅତି ଆନନ୍ଦରେ ଥାଏ । ଏକଥା ବିଶେଷ କେହି ଜାଣିଲେ ନାହିଁ । ଖାଲି ସର୍ଦ୍ଦାରର ଝିଅ ଜାଣିଲା । କ୍ରମେ ସର୍ଦ୍ଦାର ଘରର ସମସ୍ତେ ଜାଣିଲେ । ଚିଆଙ୍ଗ୍ ଘଣ୍ଟି ବଜାଇ ଯେଉଁ ସବୁ ସୁସ୍ୱାଦୁ ଖାଦ୍ୟଦ୍ରବ୍ୟ ସୃଷ୍ଟି କରୁଥାଏ, ତାହା ସାରା ପରିବାରର ଲୋକେ ଆନନ୍ଦରେ ଖାଉଥାନ୍ତି । ଏସବୁ କଥା ଧୀରେ ଧୀରେ ପ୍ରଘଟ ହୋଇଗଲା । ଲିଆଙ୍ଗ୍ ଏକଥା ଶୁଣିଲା । ତା' ମନ ଭିତରେ ଈର୍ଷ୍ୟା ଆସିଲା । ତେଣୁ ସେ ମଧ୍ୟ ମନରେ ଭାବିଲା କି ବଣକୁ ଯାଇ ପିଶାଚମାନଙ୍କଠାରୁ ସେପରି କିଛି ଆଣି ପାରିଲେ ତା'ର ମଧ୍ୟ ଭାଗ୍ୟ ଖୋଲିଯିବ । ସିଏ ଯାହା ଶୁଣିଥିଲା ସେହିପରି



କଲ । ଦେହରେ ତରଳ ଚନ ସବୁ ବୋଳି ଗୋଟାଏ ପଥର ଉପରେ ପଡ଼ି ରହିଥାଏ ! ପିଶାଚମାନେ ତାକୁ ଦେଖିବା ମାତ୍ରେ ଚିତ୍କାର କରି ପରସ୍ପରକୁ କହିଲେ, "ଆରେ ଦେଖିଲଣି, ଆମ ଘଣ୍ଟିଚୋର ପୁଣି ଆସି ଯାଇଛି । ଚାଲ ତାକୁ ଧରି ଖାଇବା ।"

ଲିଆଙ୍ଗ୍ ସେତେବେଳକୁ ବୁଝିଲା କି ସେ ଚିଆଙ୍ଗ୍ ଭଳି ଦେଖିବାକୁ ହୋଇଥିବାରୁ ପିଶାଚମାନେ ତାକୁ ଚିଆଙ୍ଗ୍ ବୋଲି ଭୁଲ କରି ବସିଛନ୍ତି । କିନ୍ତୁ ସେ ବା କରିବ କ'ଣ ? ସେ ତ ଅଚେତ ହୋଇ ରହିଥିବାର ଅଭିନୟ କରୁଥିଲା । କଥା କହି ସେମାନଙ୍କ ଭୁଲ ଭାଙ୍ଗିବ ବା କିପରି ?

ପିଶାଚମାନେ ତାକୁ ଗୁମ୍ଫା ଭିତରକୁ ନେଇଗଲେ । ତା'ପରେ ପିଶାଚ ରାଜା କହିଲା, "ଗୋଟାଏ ବଡ଼ ହାଣ୍ଡି ନେଇଆସ ଓ ତାକୁ ତା' ଭିତରେ ରଖି ପାଣି ପୂରାଅ । ତା'ପରେ ହାଣ୍ଡି ଚୁଲିରେ ବସାଇ ଦିଅ ।"

ସେହିପରି କରାଗଲା । ପାଣି ଗରମ ହେବାରୁ ଲିଆଙ୍ଗ୍‌କୁ ବହୁତ କଷ୍ଟ ହେଲା । ସେ ହାଣ୍ଡି ଭିତରୁ ବାହାରକୁ ଡେଇଁପଡ଼ି ଦୌଡ଼ିଲା । ପିଶାଚମାନେ ମଧ୍ୟ ତା' ପଛରେ ଦୌଡ଼ି ଦୌଡ଼ି ତାକୁ ଧରିଲେ ଓ ପୁଣି ଗୁମ୍ଫା ଭିତରକୁ ଟାଣି ଟାଣି ନେଇ ଆସିଲେ । ସେଠାରେ ପିଶାଚ ରାଜା କହିଲା, "ତା'ର ନାକ ଟାଣି ଟାଣି ଲମ୍ବା କରିଦେଇ ଛାଡ଼ିଦିଅ, ତେବେ ଅନ୍ୟମାନେ ତାକୁ ଦେଖି କେବେ ମଧ୍ୟ ଏପରି ଚୋରି କରିବାକୁ ସାହସ କରିବେ ନାହିଁ ।"

ଲିଆଙ୍ଗ୍‌କୁ ଧରି ଜଣକ ପରେ ଜଣେ ତା'ର ନାକ ଟାଣିବାରେ ଲାଗିଲେ । ନାକ ପ୍ରାୟ ସାତହାତ ଲମ୍ବା ହୋଇଗଲା । ତା'ପରେ ସେମାନେ ତା'କୁ ଦୁଇଚାରିଟା ବିଧା ମାରି ଗୁମ୍ଫା ବାହାରକୁ ଫୋପାଡ଼ି ଦେଲେ । ବିଚରା ଲିଆଙ୍ଗ୍ ପ୍ରାଣ ବଞ୍ଚାଇ ଧୁସୁରି ଧୁସୁରି କୌଣସି ମତେ ଘରକୁ ଗଲା ।

ଏତେ ରାତିଯାଏ ଲିଆଙ୍ଗ୍ ନ ଆସିବାରୁ ତା' ସ୍ତ୍ରୀ ବହୁତ ବ୍ୟସ୍ତ ହୋଇ ଅପେକ୍ଷାରେ ଥାଏ । ଲିଆଙ୍ଗ୍ କବାଟରେ କରାଘାତ କରିବାକୁ ତା' ସ୍ତ୍ରୀ ଖୁସିରେ ଆସି କବାଟ ଫିଟାଇବାରୁ



ଲିଆଙ୍ଗ୍ କହିଲା, "ଓହୋ, ମୋ ନାକ ଉପରେ କାହିଁକି ଠିଆ ହେଲ ?"

"ଆରେ, ପାଗଳ ନା କ'ଣ ? ଏପରି ଅଜବ କଥା କ'ଣ କହୁଛ ?" କହି ତା' ସ୍ତ୍ରୀ ଲିଆଙ୍ଗ୍‌କୁ ଚାହିଁଦେଇ ବିସ୍ମିତ ହୋଇଗଲା ।

ସତରେ ଲିଆଙ୍ଗ୍‌ର ସାତହାତ ଲମ୍ବର ନାକ ତଳେ ଘୁସୁରୁଥିଲା । ଲିଆଙ୍ଗ୍ ତାକୁ ଗୋଟାଇ ନେଇ ମୋଡ଼ିମାଡ଼ି ହାତରେ ଧରି ଘର ଭିତରେ ପଶିଲା ।

"କଥା କ'ଣ ? ତୁମର ଏଭଳି ଦୁର୍ଦ୍ଦଶା ହେଲା କିପରି ?" ଉତ୍କଣ୍ଠା ସହକାରେ ତା' ସ୍ତ୍ରୀ ପଚାରିଲା ।

ତା'ପରେ ଲିଆଙ୍ଗ୍ ତା' ସ୍ତ୍ରୀକୁ ସବୁକଥା କହିଲା । ତା' ସ୍ତ୍ରୀ ବଡ଼ ଦୁଃଖିତ ହୋଇ ଚିଆଙ୍ଗ୍ ପାଖକୁ ଦୌଡ଼ିଲା । ସେଠାରେ ପହଞ୍ଚି ସେ ଚିଆଙ୍ଗ୍‌କୁ ସବୁ କଥା କହିଲା । ଚିଆଙ୍ଗ୍ କହିଲା, "ଭାଉଜ, ତମେ ଘରକୁ ଯାଅ ମୁଁ ଯାଇ ଲୁଚି ଲୁଚି ପିଶାଚଙ୍କ ଗୁମ୍ଫାରୁ ଖବର ସଂଗ୍ରହ କରେ, ଯଦି ଏହାର କୌଣସି ପ୍ରତିକାର ଥାଏ ।"

ଲିଆଙ୍ଗ୍‌ର ସ୍ତ୍ରୀ ଘରକୁ ଫେରିଗଲେ । ଏଣେ ଚିଆଙ୍ଗ୍ ଯାଇ ଗୁମ୍ଫା ନିକଟରେ ପହଞ୍ଚିଲା । ଲୁଚି କରି ପିଶାଚମାନଙ୍କର ବାର୍ତ୍ତାଳାପ ଶୁଣୁଥାଏ । ଅନ୍ୟାନ୍ୟ କଥାବାର୍ତ୍ତା ମଧ୍ୟରେ ପିଶାଚ ରାଜା କହିଲା, "ଆରେ, ସେ ମୂର୍ଖର ନାକର ଅବସ୍ଥା କ'ଣ ହେଲା ? ବିଚରା ! ସେ ଯଦି ଜାଣିଥା'ନ୍ତା ତେବେ ଯାଦୁକାରୀ ଘଣ୍ଟିକୁ ବଜାଇ ବଜାଇ କେହି କହିଲେ ତା'ର ନାକଟା ଛୋଟ ହୋଇଯା'ନ୍ତା ।"

ଏତିକି ଶୁଣି ଚିଆଙ୍ଗ୍ ଘରକୁ ଦୌଡ଼ିଲା । ଘରେ ପହଞ୍ଚି ଯାଦୁକରୀ ଘଣ୍ଟି କାଢ଼ି ସେ ଭାଇ-ଘରକୁ ଦୌଡ଼ିଲା । ବାଟରେ ତାକୁ ଦେଖି ଅଟକାଇଲା ସର୍ଦ୍ଦାରଙ୍କ ଝିଅ । ସେ ପଚାରିଲା, "କଥା କ'ଣ ? ଦୌଡ଼ୁଛ କାହିଁକି ?" ଚିଆଙ୍ଗ୍ ତାକୁ ଲିଆଙ୍ଗ୍‌ର ହାଲ ଶୁଣାଇ କହିଲା କି ତା' ନାକ ଛୋଟ ହୋଇଯାଉ ବୋଲି କହି ଘଣ୍ଟା ବଜାଇଲେ ନାକ ଛୋଟ ହୋଇଯିବ ।

ଝିଅଟି ଟିକିଏ ଚିନ୍ତା କରି କହିଲା, "ଆଜିଯାଏ ଆମେ ଭାବିଥିଲୁଁ ସେ ଘଣ୍ଟାରୁ

ଖାଲି ଖାଦ୍ୟଦ୍ରବ୍ୟ ମିଳେ । ବର୍ତ୍ତମାନ ବୁଝାଗଲା, ସେ ଘଣ୍ଟାର ଅନ୍ୟ ଶକ୍ତି ମଧ୍ୟ ରହିଛି ।” ଏହା କହି ସେ ଘଣ୍ଟାଟି ଚିଆଙ୍ଗ ହାତରୁ ନେଇ ଚିଆଙ୍ଗର କୋଠରୀ ଭିତରକୁ ଯାଇ କହିଲା, “ଆମକୁ ହଜାରେ ସୁନାଇଟା ଦିଅ ।” ସଙ୍ଗେ ସଙ୍ଗେ ସେ କୋଠରୀ ଭିତରେ ହଜାରେ ସୁନାଇଟା ଦେଖା ଦେଲା । ତା’ପରେ ଝିଅଟି ଚିଆଙ୍ଗକୁ ଘଣ୍ଟାଟି ପୁଣି ଦେଇଦେଲା । ଚିଆଙ୍ଗ ତା’ ଭାଇ ଘରକୁ ଗଲା । ଲିଆଙ୍ଗ ବିଚରା ସାତହାତ ଲମ୍ବ ନାକ ଧରି ବସିଥାଏ । କ’ଣ କରିବ ? ଚିଆଙ୍ଗ ଭାଇ ପାଖରେ ପହଞ୍ଚି ସବୁ କଥା କହିଲା ।

ଭାଇର ପୁଣି ମନ ଖୁସି । ଚିଆଙ୍ଗ ଧୀରେ ଧୀରେ ଯାଦୁ ଘଣ୍ଟି ବଜାଇ କହିଲା, “ଛୋଟ ହୋଇଯା” । ତା’ପରେ ହାତେ ନାକ କମିଗଲା । ତା’ପରେ ଦ୍ୱିତୀୟଥର ଘଣ୍ଟି ବାଜିବାରେ ଦ୍ୱିତୀୟ ହାତ ନାକ କମିଲା । ତା’ପରେ ତୃତୀୟ । ଚତୁର୍ଥ ହେବା ପୂର୍ବରୁ ଲିଆଙ୍ଗର ସ୍ତ୍ରୀ ବିରକ୍ତ ହୋଇ ହଠାତ୍ ଯାଦୁ-ଘଣ୍ଟିଟି ଛଡ଼ାଇ ନେଇ କହିଲା, “ବହୁତ ଧୀରେ ଧୀରେ କହୁଛ, ଦିଅ ମୁଁ ଶିଘ୍ର ଶିଘ୍ର କୁହେ ।” ଏତିକି କହି ସେ ଘଣ୍ଟିଟି ବଜାଇ ଲଗିଲା ଓ “ଛୋଟ ହୋଇଯା” “ଛୋଟ ହୋଇଯା” କହିଲାଗିଲା । ତା’ପରେ ଲିଆଙ୍ଗର ନାକ ଏତେ ଛୋଟ ହୋଇଗଲା ଯେ ନାକକଟା ହେବା ପରି ଦିଶିଲା । ଏଣେ ଯାଦୁଘଣ୍ଟିଟି ମଧ୍ୟ ହାତରୁ ପଡି ଭାଙ୍ଗିଗଲା । ତେଣେ ନାକ ବି ବିକୃତ ଦିଶିଲା, ଯାଦୁଘଣ୍ଟିଟି ମଧ୍ୟ ନଷ୍ଟ ହେଲା । ଚିଆଙ୍ଗ ଦୁଃଖ କରି କହିଲା, “ଟିକିଏ ଡେରି ସହି ପାରିଲନି ଭାଉଜ ! ସର୍ବନାଶ କଲ ।” ଭାଉଜ ଖାଲି ଦୁଃଖ ଓ ପଶ୍ଚାତ୍ତାପ କରି କାନ୍ଦିଲା ।

ଏହା ଭିତରେ ହଜାରେ ସୁନାଇଟା ବଳରେ ଚିଆଙ୍ଗ ସେ ମୁଲକର ସବୁଠାରୁ ବଡ଼ ଧନୀ ଲୋକ ହୋଇଯାଇଥାଏ । ଗାଁ ସର୍ଦ୍ଦାର ବା ବର୍ତ୍ତମାନ ତା’ ସହ ଝିଅ ବାହାଘର କରିବାକୁ କାହିଁକି ନାମଙ୍ଗ ହୁଅନ୍ତା ?





## ପୋକ ଓ ପୋକ

କୁହାଯାଏ ଯେ ସବୁ ପ୍ରାଣୀମାନଙ୍କ ଅପେକ୍ଷା ଲେଲ୍ ଗୁଣ୍ଡୁଚିମୂଷା ମୁହଁରେ ବହୁତ ଦାନ୍ତ ଥା'ନ୍ତି। ଜଣାଯାଏ ଯେ କେବଳ ତା' ମୁହଁରେ ୧୩୦୦୦ ଦାନ୍ତ ଥା'ନ୍ତି।



## ଉଡ଼ିବାରେ କୁଶଳୀ

ଆଲ୍‌ବାଟ୍ରସ୍ ପକ୍ଷୀ ଛ ଦିନ ଧରି ପକ୍ଷ ନ ହଲାଇ ମଧ୍ୟ ପବନରେ ଉଡ଼ିପାରେ।

## ଆମାଜନ ନଦୀର ଜଳ

ସଂସାରରେ ଆମାଜନ୍ ନଦୀ ପରେ ଯେଉଁ ଆଠଟି ନଦୀକୁ କ୍ରମାନ୍ୱୟରେ ପୃଥିବୀର ବଡ଼ନଦୀ ବୋଲି ମାନନ୍ତି, ସେସବୁର ସମୁଦାୟ ଜଳଠୁଁ ଅଧିକ ଜଳ କେବଳ ଆମାଜନରେ ଅଛି।



No share prices,
no political fortunes, yet...

# Over 40% of Heritage readers are professionals or executives, 61% from households with a professional / executive as the chief wage earner. Half hold a postgraduate degree or a professional diploma.

– from an IMRB survey conducted in Oct. 1986




It's an unusual magazine. It has a vision for today and tomorrow.

It features ancient cities and contemporary fiction, culture and scientific developments, instead of filmstar interviews and political gossip. And it has found a growing readership, an IMRB survey reveals. Professionals, executives and their families are reading The Heritage in depth – 40% from cover to cover, 42% more than half the magazine.

More than 80% of The Heritage readers are reading an issue more than once.

And over 90% are slowly building their own Heritage collection.

Isn't it time you discovered why?

THE HERITAGE

So much in store, month after month.

CMP-2155

ପୁରସ୍କୃତ ପରିଚୟୋକ୍ତି ଡିସେମ୍ବର ୧୯୮୮ ସଂଖ୍ୟାରେ ପ୍ରକାଶ ପାଇବ



Pranlal K. Patel



D. N. Shirke

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଶବ୍ଦ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଅକ୍ଟୋବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବୋତ୍କୃଷ୍ଟ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ଠିକଣା ପୋଷ୍ଟକାର୍ଡରେ ଲେଖି ନିମ୍ନ ଠିକଣାରେ ପଠାନ୍ତୁ :

**ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, …ସ-୬୦୦୦୨୬**

---

**ଅଗଷ୍ଟ '୮୮ ପ୍ରତିଯୋଗିତାର ଫ…**

**ପ୍ରଥମ ଚିତ୍ର : ହାତ ବଢ଼ାଇ ମାଗେ ସେ …**

**ଦ୍ୱିତୀୟ ଚିତ୍ର : ଏକ ମିଳେ ତାକୁ ଥିବାରୁ ଭେଦ ।**

**ପୁରସ୍କାର ବିଜୟିନୀ : ଶାନ୍ତିଲତା ପଟ୍ଟଆରୀ, ମାର୍କଣ୍ଡେଶ୍ୱର ସାହି (ପୁରୀ)**

ବିଜୟିନୀଙ୍କୁ ଅଭିନନ୍ଦନ, ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


# ଜହ୍ନମାମୁଁ

**ବାର୍ଷିକ ଦେୟ : ଟ. ୩୦-୦୦**

ମନିଅର୍ଡର ପଠାଇବା ଠିକଣା :

ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଙ୍ଗସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

ବିଦେଶ ସକାଶେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେଶନ୍ସ, ଚନ୍ଦାମାମା ବିଲ୍ଡିଙ୍ଗ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬



Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) … CHANDAMAMA PUBLICATIONS, Chanda…

ବାଇଶ କ୍ୟାରେଟ ସ୍ୱର୍ଣ୍ଣାଚ୍ଛାଦିତ ଅଲଙ୍କାର

ସଦା ଝକଝକ ଏବଂ ଅତୁଳନୀୟ ସୌନ୍ଦର୍ଯ୍ୟ ! ସବୁ ପ୍ରକାର ରତ୍ନ ମୁଦ୍ରାଙ୍କ ଭଳି

ନାନା ବଧୂ ଅଳଙ୍କାର !

ମଗାଇଲା ବେଳେ ଅଙ୍କ କାରର ନମ୍ବର ଲେଖିବେ । ଭି. ପି. ଖର୍ଚ୍ଚ ଅଲଗା ।

ମାଗଣା ତାଲିକା ପାଇଁ ଲେଖନ୍ତୁ । (ଏଜେଣ୍ଟ ଆବଶ୍ୟକ)

No. 204 Rs. 150 50

No. 57 Rs. 75/50

No. 95 Rs. 75/50

No. 78 Rs. 50 50

No. 117 Rs. 40/50

No. 98 Rs. 75/50

No. 81 Rs. 50/50

No. 136 Rs. 50 50

No. 74 Rs. 75/50 STONE

No. 18 Rs. 250 50

No. 28 Rs. 225 50

No. 32 Rs. 200 50

No. 140 Rs. 50/50

No. 21 Rs. 250 50

No. 181 Rs. 65 50

No. 129 Rs. 50 50

No. 111 Rs. 25 50

No. 44 Rs. 150/50

No. 41 Rs. 150/50

No. 146 Rs. 100 50

No. 147 Rs. 100 50

No. 149 Rs. 100 50

No. 150 Rs. 100 50

No. 151 Rs. 100/50

No. 152 Rs. 100 50

No. 145 Rs. 80 50

No. 165 Rs. 50/50

No. 167 Rs. 50/50

HEAD CHUTTY

No. 159 Rs. 65 50

No. 96 Rs. 75/50

No. 99 Rs. 75/50

No. 102 Rs. 75/50

No. 191 Rs. 65/50

No. 192 Rs. 65 50

# MERI GOLD COVERING WORKS




Estd. 1947

# CHANDAMAMA PUBLICATIONS

188, N. S. K. SALAI, VADAPALANI, MADRAS - 600 026, INDIA.
Phone: 423423, 421778 Grams: "CHANDAMAMA" Telex: 041-347



*Publishers:*

CHANDAMAMA—English, Hindi, Telugu, Kannada, Bengali, Gujarati, Assamese, Sanskrit; AMBULIMAMA — Tamil; CHANDOBA — Marathi
AMBILI AMMAVAN — Malayalam; JAHNAMAMU — Oriya
THE HERITAGE — English


ପ୍ରିୟ ପାଠକ ପାଠିକାବୃନ୍ଦ,

ଆପଣଙ୍କ ନିକଟରେ, ଗଳ୍ପ, କାହାଣୀ ଓ ଭ୍ରମଣକାହାଣୀ ପରିବେଷଣ କରିବା ଆମପାଇଁ ହୋଇଥାଏ ଏକ ଆନନ୍ଦର ବିଷୟ । କିନ୍ତୁ ପତ୍ରିକାଟିର ମୂଲ୍ୟବୃଦ୍ଧି ବିଷୟରେ ଆଜି କହିବା ବେଳକୁ ଆମେ ସଙ୍କୋଚ ବୋଧ କରୁଛୁ । ପ୍ରକୃତରେ ଦେଖିଲେ ବହୁ ପୂର୍ବରୁ ପ୍ରକାଶନ ସବୁର ମୂଲ୍ୟବୃଦ୍ଧି ହେବାର କଥା । ତଥାପି ଯଥାସମ୍ଭବ ଆମେ ସେସବୁକୁ ଏଡ଼େଇ ଦେଇ ପତ୍ରିକାଟିକୁ ପୂର୍ବପରି ଚଳାଇ ନେଉଥିଲୁ । କିନ୍ତୁ ବଜାରରେ କାଗଜର ଦର ଅଧିକରୁ ଅଧିକ ବୃଦ୍ଧି ପାଇବା ବିଷୟ ଆପଣଙ୍କର ଅଜଣା ନୁହେଁ । ତା'ଛଡ଼ା ସମଗ୍ର ପ୍ରକାଶନ ସଂସ୍ଥାରେ ସବୁଦିଗରୁ ହିଁ ଦରବୃଦ୍ଧି ଘଟୁଥିବାରୁ ନାନା ଦିଗରୁ ଚାପ ପଡୁଛି ।

ଅତଏବ ବାଧ୍ୟ ହୋଇ ଆମେ ୧୯୮୮ ନଭେମ୍ବରଠାରୁ ପ୍ରତି ଖଣ୍ଡ "ଜହ୍ନମାମୁଁ"ର ମୂଲ୍ୟ ଅଢ଼େଇ ଟଙ୍କା ପରିବର୍ତ୍ତେ ତିନିଟଙ୍କା ରଖୁଛୁ ।

ସଙ୍ଗେ ସଙ୍ଗେ ଆମେ ଆନନ୍ଦର ସହିତ ଘୋଷଣା କରୁଛୁ କି "ଜହ୍ନମାମୁଁ"ର କଳେବର ବୃଦ୍ଧି ହେବ ଏକ ନୂତନ ଢଙ୍ଗକୁ ନେଇ ଯାହା ଆପଣମାନଙ୍କ ପାଇଁ ହେବ ଏକ ବିଶେଷ ଆକର୍ଷଣ; ତାହା ଆପଣଙ୍କୁ ବିସ୍ମିତ ଓ ଆନନ୍ଦିତ କରିବ । ଏହା ଆମର ଅନେକ ଦିନର ପ୍ରଚେଷ୍ଟାର ଫଳ । ସେଥିପାଇଁ ଅପେକ୍ଷା କରନ୍ତୁ । 'ଜହ୍ନମାମୁଁ' ସର୍ବଦା ଆପଣଙ୍କ ସେବାରେ ଉତ୍ସର୍ଗୀକୃତ—ଆପଣଙ୍କ ସଦୟ ସହଯୋଗ ଓ ସହାନୁଭୂତି କାମନା କରୁଛି ।

ଆପଣଙ୍କର ବନ୍ଧୁ,

B. Viswanatha Reddi

ପ୍ରକାଶକ

